ଓଡ଼ିଶା ସାହିତ୍ୟ ଏକାଡେମୀର ସୁଯୋଗ୍ୟ ସଭାପତିଙ୍କୁ
ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କୁ
ଲେଖକର ପ୍ରୀତି

• ପ୍ରକାଶକ •

ଭାରତ ଭାରତୀ

ସୁତାହାଟ,

କଟକ- ୭୫୩୦୦୧

• ଟାଇପ ସେଟିଂ •

କୋଣାର୍କ ଡାଟା ପ୍ରୋସେସିଙ୍ଗ,

ଭୁବନେଶ୍ୱର, ଫୋନ୍ - ୪୦୭୪୮୯

• ପ୍ରଥମ ପ୍ରକାଶନ •

୧୯୯୫

• ମୁଦ୍ରଣ •

ଜଗନ୍ନାଥ ପ୍ରୋସେସ୍

କଟକ

• ମୂଲ୍ୟ •

କୋଡ଼ିଏ ଟଙ୍କା

# ଭୂମିକା

୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନବେଳେ ବ୍ରହ୍ମପୁର ଜେଲ ଭିତରେ ବିଶିଷ୍ଟ ସ୍ୱାଧୀନତାସଂଗ୍ରାମୀ ଓ ଜ୍ଞାନମଣ୍ଡଳ ପ୍ରଣେତା ବିନୋଦ କାନୁନ୍‌ଗୋଙ୍କ ସହିତ ମୋର ଘନିଷ୍ଠ ପରିଚୟ ହୋଇଥିଲା। ଆମେ ଦୁହେଁ ଅଟକବନ୍ଦୀ ହୋଇ ଦୀର୍ଘ ତିନି ବର୍ଷ କାଳ ସେଠାରେ ରହିଥିଲୁ। ଏହି ଦୀର୍ଘ ସମୟ ତାଙ୍କୁ ଦୀର୍ଘ ଲାଗି ନ ଥିଲା ଓ ତାଙ୍କପାଇଁ ମୋ ପରି ବହୁ ଅଟକବନ୍ଦୀଙ୍କୁ ଦୀର୍ଘ ଲାଗି ନ ଥିଲା। ତାଙ୍କର ତୀକ୍ଷ୍ଣବୁଦ୍ଧି ଓ ହାସ୍ୟରସିକତା ସବୁବେଳେ ଉପଭୋଗ୍ୟ ହେଉଥିଲା। ତାଙ୍କ ଭାଷାରେ ଏହି ଜେଲଥିଲା ତାଙ୍କପାଇଁ ବିଶ୍ୱବିଦ୍ୟାଳୟର ପ୍ରବେଶ ଦ୍ୱାର। ତାଙ୍କ ଉଦ୍ୟମରେ ବ୍ରହ୍ମପୁର ଜେଲରେ ମେଡିକାଲ କଲେଜ ଖୋଲା ହୋଇଥିଲା। ଏହି ଜେଲରେ ଥିବା ସହବନ୍ଦୀ ଅଭିଜ୍ଞ ଡାକ୍ତରମାନଙ୍କଠାରୁ ଅନ୍ୟମାନଙ୍କ ସହିତ ସେ ଶିକ୍ଷାକଲେ ଚିକିତ୍ସାଶାସ୍ତ୍ର ତଥା ରସାୟନ ଓ ପଦାର୍ଥ ବିଜ୍ଞାନର ପ୍ରାଥମିକ ତଥ୍ୟ। ବାହାରେ ଆସି କଳା ଓ ବିଜ୍ଞାନର ଅନ୍ୟାନ୍ୟ ଶାସ୍ତ୍ର ଅଧ୍ୟୟନ ଓ ମନ ନ କଲେ। ଯେଉଁଜ୍ଞାନ ଆହରଣ କଲେ ତାକୁ ଓଡ଼ିଶାର ଛାତ୍ର, ଶିକ୍ଷକ ଓ ଅଧାପାଠୁଆ ଅଗଣିତ ପାଠକଙ୍କ ଭିତରେ ବିରତଣ କରିବାପାଇଁ କରିଥିଲେ ଦୀର୍ଘ ଓ କଠିନ ସାଧନା। ତାଙ୍କର ସେହି ଅକ୍ଳାନ୍ତ ଶ୍ରମର ଫଳ "ଜ୍ଞାନମଣ୍ଡଳ" ଓ ଶିଶୁପାଠ୍ୟ ଉପଯୋଗୀ ପୁସ୍ତକ। ତାଙ୍କ ସ୍ୱଭାବସୁଲଭ ସହଜ, ସରଳ ଓ ମନୋଜ୍ଞ ଭାଷାରେ ପ୍ରଣୀତ ଏହି ମୂଲ୍ୟବାନ ପୁସ୍ତକଗୁଡ଼ିକ ଓଡ଼ିଆ ଜାତି ଓ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ। ଏହି ପୁସ୍ତକଗୁଡ଼ିକୁ ପ୍ରଣୟନ କରି ସେ ଓଡ଼ିଆ ଭଷାକୁ ଏପରି ଶକ୍ତି ପ୍ରଦାନ କରିଛନ୍ତି ଯେଉଁଥିରେ ଜ୍ଞାନ ବିଜ୍ଞାନର ସମସ୍ତ ବିଭାଗର ଯେ କୌଣସି ଜଟିଳ ବିଷୟ ଲେଖାଯାଇ ପାରିବ। ତାଙ୍କ ପଥ ଅନୁସରଣ କରି ଓଡ଼ିଆ ଲେଖକମାନେ କଳା ଓ ବିଜ୍ଞାନର ସମସ୍ତ ବିଷୟରେ ପୁସ୍ତକମାନ ପ୍ରଣୟନ କଲେ ଓଡ଼ିଆ ଭାଷା ଓ ସାହିତ୍ୟ ଭାରତର ଯେ କୌଣସି ସମୃଦ୍ଧିଶାଳୀ ଭାଷାର ସମକକ୍ଷ ହୋଇପାରିବ।

ସାହିତ୍ୟ ତଥା ଅନ୍ୟାନ୍ୟ କ୍ଷେତ୍ରରେ ତାଙ୍କ ସାଧନାର ଯେଉଁସବୁ ତଥ୍ୟ ସେ ନିଜେ ଲିପିବଦ୍ଧ କରିଯାଇଛନ୍ତି ତଥା ତାଙ୍କ ସହିତ ମୋର ଦୀର୍ଘ ଆତ୍ମୀୟ ସମ୍ପର୍କ ଅବସରକାଳ ଭିତରେ ମୁଁ ତାଙ୍କୁ ଯେପରି ଭାବରେ ଅଧ୍ୟୟନ କରିଛି ତା'ରି ଉପରେ ଭିତ୍ତିକରି ମୁଁ ତାଙ୍କର ଏହି ସଂକ୍ଷିପ୍ତ ଜୀବନୀଟି ଲେଖିଛି ସାଧାରଣ ପାଠକଙ୍କପାଇଁ। ଓଡ଼ିଶାର ଜନସାଧାରଣଙ୍କ ସହିତ ଏହି ସାଧାରଣ ସାହିତ୍ୟ ସାଧକଙ୍କୁ ପରିଚିତ କରାଇବାପାଇଁ ମୋର ଏହି ସାମାନ୍ୟ ପ୍ରୟାସ। କେନ୍ଦ୍ର ସାହିତ୍ୟ ଏକାଡ଼େମୀଙ୍କ ବରାଦ ଅନୁଯାୟୀ ମୁଁ ତାଙ୍କ ବିଷୟରେ ଏହା ଅପେକ୍ଷା ବଡ଼ ପୁସ୍ତକ ଖଣ୍ଡିଏ

ଲେଖିଦେଇଛି ଏବଂ ତାହା ମଧ୍ୟ ଯଥା ସମୟରେ ପ୍ରକାଶ ପାଇବ । ତାଙ୍କ ବିଷୟରେ ବିସ୍ତୃତ ଭାବରେ ଜାଣିବା ପାଇଁ ତାଙ୍କ ଆତ୍ମଜୀବନୀମୂଳକ ''ଋଣ ପରିଶୋଧ'' ଓ ''ପାଠ ପଢେ ପଢେ ଅପାଠୁଆ'' ପୁସ୍ତକ ଦି'ଖଣ୍ଡି ପଢ଼ିବାକୁ ହେବ ।

ଓଡ଼ିଶାର ଅନ୍ୟତମ ଉତ୍ସାହୀ ପ୍ରଗତିଶୀଳ ପ୍ରକାଶକ ଶ୍ରୀ ଉମେଶ ପ୍ରସାଦ ସାହୁଙ୍କ ତାଗିଦା ଯୋଗୁଁ ଅଳ୍ପଦିନ ଭିତରେ ଏହି କ୍ଷୁଦ୍ର ପୁସ୍ତକଟି ଲେଖା ହୋଇଛି । ସେଥିପାଇଁ ଶ୍ରୀମାନ୍ ଉମେଶ ଧନ୍ୟବାଦର୍ହ । ଇତି ।

ବିନୀତ
ବଳରାମ ମହାନ୍ତି

୧୧୩- ବାପୁଜୀ ନଗର
ଭୁବନେଶ୍ୱର - ୯

## ସରସ୍ୱତୀଙ୍କର ଆଦର୍ଶ ପୁତ୍ର

କଥିତ ଅଛି ଯେ ଦୁଧ ଓ ପାଣିକୁ ଏକାଠି ମିଶାଇ ଗୋଟିଏ ଜାଗାରେ ରଖିଦେଲେ ହଂସ ସେଥିରୁ ଦୁଧକୁ ଛାଣି ପିଇଦିଏ ଏବଂ ଖାଲି ପାଣି ରହିଯାଏ। ସେଇଥିପାଇଁ ବିଦ୍ୟାଦାତ୍ରୀ ସରସ୍ୱତୀଙ୍କର ବାହନ ହଂସ। ହଂସ ଯେପରି ଦୁଧ ଓ ପାଣି ଭିତରୁ ସାର ଜିନିଷ ଦୁଧକୁ ଛାଣି ପିଇଦିଏ ସେହିପରି ସରସ୍ୱତୀ ଯାହାକୁ ଆଶ୍ରୟ କରନ୍ତି, ଅର୍ଥାତ୍ ଯେ ବିଦ୍ୱାନ ହୁଏ ସେ ସଂସାରର ଅସାର ଜିନିଷକୁ ପରିହାର କରି ସାର ଜିନିଷ ଜ୍ଞାନକୁ ଆହରଣ କରିନିଏ। ଏହି ଭାବରେ ହଂସର ଗୁଣ ସହିତ ସରସ୍ୱତୀଙ୍କର ଗୁଣର ସାମଞ୍ଜସ୍ୟ ରହିଛି। ଏହା ହିଁ ସାଧାରଣ ଲୋକ ଓ ବିଦ୍ୱାନ ଲୋକ ଭିତରେ ପ୍ରଭେଦ। ଏହି ଅର୍ଥରେ ଓଡ଼ିଶାର ସ୍ୱନାମଧନ୍ୟ ସ୍ୱାଧୀନତା ସଂଗ୍ରାମୀ ଓ 'ଜ୍ଞାନମଣ୍ଡଳ'ର ପ୍ରଣେତା ବିନୋଦ କାନୁନ୍‌ଗୋ ଜଣେ ପ୍ରକୃତ ବିଦ୍ୱାନ ବ୍ୟକ୍ତି ଥିଲେ। ତାଙ୍କର ବାଲ୍ୟାବସ୍ଥାରୁ ଏହା ପ୍ରକଟିତ ହୋଇଥିଲା। ସବୁଥିରୁ ସାର ସଂଗ୍ରହ କରିବାର ଅସାଧାରଣ ଶକ୍ତି ତାଙ୍କର ଥିଲା।

ସେ ମାଇନର ସ୍କୁଲରୁ ବୃତ୍ତି ପାଇ ହାଇସ୍କୁଲରେ ଅଧ୍ୟୟନ କଲାବେଳେ ଭାରତରେ ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା। ମହାତ୍ମା ଗାନ୍ଧିଙ୍କ ଆହ୍ୱାନରେ ସେ ନିଜର ଉଜ୍ଜ୍ୱଳ ଭବିଷ୍ୟତକୁ ଜଳାଞ୍ଜଳି ଦେଇ ପଢ଼ା ଛାଡ଼ି ସ୍ୱାଧୀନତା ସଂଗ୍ରାମୀ ହେଲେ ଓ କାରାବରଣ କଲେ। ମାତ୍ର ପାଠ ତାଙ୍କୁ ଛାଡ଼ିଲା ନାହିଁ। କାରାଗାର ହେଲା ତାଙ୍କ ଜ୍ଞାନ ଆହରଣର ପ୍ରବେଶ ଦ୍ୱାର। କାରାଗାର ଭିତରେ ଆବଦ୍ଧ ବିଭିନ୍ନ ପ୍ରାନ୍ତର ବିଦ୍ୱାନ ଓ ଗୁଣୀମାନଙ୍କଠାରୁ ସେ ଜ୍ଞାନ ବିଜ୍ଞାନର ବିଭିନ୍ନ ବିଭାଗ ବିଷୟରେ ଶିକ୍ଷାଲାଭ କଲେ ଏବଂ ବହୁ ଉପାଦେୟ ପୁସ୍ତକ ଅଧ୍ୟୟନ କରିବାର ସୁଯୋଗ ପାଇଲେ। ତେଣୁ ସେ ଅଧା ପାଠୁଆ ହୋଇ କାରାବରଣ କରିଥିଲେ ମଧ୍ୟ ବାହାରକୁ ଆସିଲାବେଳକୁ ଜ୍ଞାନଭଣ୍ଡାର ଭିତରେ ପ୍ରବେଶ କରି ସାରିଥିଲେ। ଜ୍ଞାନଭଣ୍ଡାର ଭିତରୁ କଳା ଓ ବିଜ୍ଞାନର ବିଭିନ୍ନ ବିଭାଗ ବିଷୟରେ ମୌଳିକ ତଥ୍ୟ ଆହରଣ କରିବାପାଇଁ ସେ ପରବର୍ତ୍ତୀ ସମୟରେ ସାଧନା କଲେ। ତାଙ୍କ ଦୀର୍ଘ ସାଧନାର ଫଳ ହେଲା 'ଜ୍ଞାନମଣ୍ଡଳ'।

ଆଧୁନିକ ଯୁଗର ଶ୍ରେଷ୍ଠ ଜ୍ଞାନୀ ଓ ବିଦ୍ୱାନମାନଙ୍କ ପରି ବିନୋଦ ବାବୁ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ଜଣେ ପ୍ରକୃତ ଅର୍ଥରେ ଶିକ୍ଷିତ ହେବାକୁ ହେଲେ ଜ୍ଞାନ ବିଜ୍ଞାନର କୌଣସି ଗୋଟିଏ ବିଷୟରେ ପାରଦର୍ଶିତା ହାସଲ କଲେ ଚଳିବ ନାହିଁ। ଜ୍ଞାନ ବିଜ୍ଞାନର ବିଭିନ୍ନ ବିଷୟରେ ମୌଳିକ ତଥ୍ୟ ଆହରଣ କଲେ ଯାଇ ତାକୁ ପ୍ରକୃତ ଶିକ୍ଷା ବୋଲି କୁହାଯିବ। ଆଧୁନିକ ଶିକ୍ଷା ଅର୍ଥରେ ଏହାକୁ ଲିବରାଲାଇଜଡ୍ ଶିକ୍ଷା ବା ସମନ୍ୱିତ ଶିକ୍ଷା ବୋଲି କୁହାଯାଇଛି। ସେହି ସମନ୍ୱିତ ଶିକ୍ଷାର ସମାବେଶ ହେଲା ତାଙ୍କ ପ୍ରଣୀତ ଜ୍ଞାନମଣ୍ଡଳ ଓ ପିଲାଙ୍କ ଶିକ୍ଷାପାଇଁ ପ୍ରଣୀତ କ୍ଷୁଦ୍ର ପୁସ୍ତକମାଳା। ଶିକ୍ଷକମାନେ ଜ୍ଞାନମଣ୍ଡଳ ତଥା ଏହି କ୍ଷୁଦ୍ର ପୁସ୍ତକଗୁଡ଼ିକୁ ଅଧ୍ୟୟନ କଲେ ପ୍ରକୃତ ସମନ୍ୱିତ ଶିକ୍ଷାଲାଭ କରି ପାରିବେ ଏବଂ ପିଲାଙ୍କୁ ପ୍ରକୃତ ଅର୍ଥରେ ଶିକ୍ଷା ଦେଇପାରିବେ। ତେଣୁ ସେ ଶିକ୍ଷକଙ୍କ ଗୁରୁଭଳି କାର୍ଯ୍ୟ କରାଯାଇଛନ୍ତି। ମହାତ୍ମା ଗାନ୍ଧି ଯାହା ଉପଦେଶ ଦେଇଥିଲେ ତାହା ହିଁ ସେ କରିଗଲେ। ଅନ୍ୟଠାରୁ ବିନୋଦ ବାବୁ ଯେଉଁ ଜ୍ଞାନ ଆହରଣ କରିଥିଲେ ସେ ତାର ମାରଫତଦାର ଭଳି ରହି ସମସ୍ତଙ୍କୁ ତାହା ବିତରଣ କରି ଯାଇଛନ୍ତି।

ବିନୋଦ କାନୁନ୍‌ଗୋ ଯଥାର୍ଥରେ ପୁରାଣ ଯୁଗର ସରସ୍ୱତୀଙ୍କର ଆଦର୍ଶପୁତ୍ର ଏବଂ ଆଧୁନିକ ଯୁଗର ମହାପୁରୁଷ ମହାତ୍ମା ଗାନ୍ଧିଙ୍କର ଆଦର୍ଶ ଶିଷ୍ୟ। ସେ ଏକ ସାର୍ଥକ ଜୀବନର କାହାଣୀ।

## ତାଙ୍କ ବାଲ୍ୟ ଜୀବନ

ବିନୋଦ କାନୁନ୍‌ଗୋ ୧୯୧୨ ମସିହାରେ କଟକ ସହରଠାରୁ ୨୬ କିଲୋମିଟର ଦୂରରେ ଅବସ୍ଥିତ ମଲ୍ଲିପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ପିତା କେଶବ କାନୁନ୍‌ଗୋ ତାଙ୍କ ଗ୍ରାମ ନିକଟବର୍ତ୍ତୀ ସୁପରିଚିତ ଗ୍ରାମ ନାଗଣପୁରର ବାନାମ୍ବର ମହାନ୍ତିଙ୍କ କନ୍ୟା ଶ୍ରୀମତୀ ପିରଙ୍କୁ ବିବାହ କରିଥିଲେ। ବାନାମ୍ବର ମହାନ୍ତି ସ୍ୱନାମଧନ୍ୟ ସାହିତ୍ୟିକ ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭାଇ। ପିତାଙ୍କ ବିବାହବେଳକୁ ତାଙ୍କର ୬୦/୭୦ ଏକର ପର୍ଯ୍ୟନ୍ତ ଜମି ଥିଲା, ଗୋଟିଏ ଦୁଇଟି ଜମିଦାରୀ ଓ ମକଦ୍ଦମି ଇଲାକା ଥିଲା। ସେମାନେ ଭଲରେ ଚଳୁଥିଲେ। ପିତା କେଶବ କାନୁନ୍‌ଗୋ ମାତ୍ର ଏକୋଇଶ ବର୍ଷ ବୟସରୁ ଲୁଚେଇ କରି ଅଫିମ ଖାଇବା ଆରମ୍ଭ କରି ଦେଇଥିଲେ। ଏହିପରି ଖାଉ ଖାଉ ତାଙ୍କ ସମ୍ପତ୍ତି ଶେଷ ହେବାକୁ ବସିଲା। ବିନୋଦ କାନୁନ୍‌ଗୋଙ୍କୁ ପାଞ୍ଚ ବର୍ଷ ହେଲାବେଳକୁ ତାଙ୍କ ଜମି ଚକକୁ ଚକ ବିକ୍ରି ହୋଇ ଆଉ ମାତ୍ର ୭୮ ଡିସମିଲ ଥିଲା। ବିନୋଦ ବାବୁ ବାପାଙ୍କର ଏହି ମନ୍ଦ ଅଭ୍ୟାସକୁ ଘୋଡ଼େଇ ନ ଦେଇ ପ୍ରକାଶ କରିଦେବାର ସାହସ କରିଛନ୍ତି।

ପୁଅର ଭବିଷ୍ୟତପାଇଁ ବାପାଙ୍କର ଚିନ୍ତା ନ ଥିଲା। ମାତ୍ର ମା ସେଥିପାଇଁ ସବୁବେଳେ ଚିନ୍ତିତ। ଯୋଗକୁ ସେତିକିବେଳେ ବିନୋଦ ବାବୁଙ୍କ ମାଈଁଙ୍କର ପୁଅଟି

ମରିଯାଇଥାଏ। ଗୋଟିଏ ପିଲା ତାଙ୍କ ପାଖରେ ରହୁବୋଲି ସେ ଚାହୁଁଥାନ୍ତି। ତେଣୁ ଭଣଜା ବିନୋଦଙ୍କୁ ପାଖରେ ·ନେଇ ରଖିବାକୁ ତାଙ୍କର ଇଚ୍ଛା। ତାଙ୍କ ଘରକୁ ସେ ଖବର ପଠାଇଥାନ୍ତି ଓ ବିନୋଦ ବାବୁଙ୍କ ମା ସେଥିପାଇଁ ରାଜି ହୋଇଥାଆନ୍ତି। ତାଙ୍କର ଇଚ୍ଛା ଯେ ଜମି ବାଡ଼ି ତ ସବୁ ବାପାଙ୍କ ଅଫିମ ଖିଆରେ ଗଲାଣି। ପୁଅ ମାମୁଁ ଘରକୁ ଯାଇ ଦି ଅକ୍ଷର ପଢ଼ି ହେଲେ ମଣିଷ ହୋଇଯାଉ। ମାତ୍ର ବାପା ପୁଅକୁ ପାଖରୁ ଛାଡ଼ି ଦେବାକୁ ରାଜି ନୁହନ୍ତି। ବରଂ ବାପା କହୁଥାନ୍ତି ଯେ ଭାଇ ଭଉଣୀ ସଳା ସୁତୁରା କରି ମୋର ଏକମାତ୍ର ପୁଅକୁ ମୋ ପାଖରୁ ନେଇ ଚାଲିଯିବାକୁ ଚାହୁଁଛନ୍ତି। ଶେଷରେ ସେଇଆ ହେଲା। ଛ' ବର୍ଷର ବାଳକ ବିନୋଦ ତାଙ୍କ ମାମୁଁଘର ନାଗଣପୁରକୁ ଯାଇ ସେଠାରେ ରହିଲେ। ନାଗଣପୁରରେ ସେ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇ ପଢ଼ିଲେ। ଆଉ ନିଜ ଗାଁକୁ ଫେରିଲେ ନାହିଁ। ତାଙ୍କ ବାପା ନିଜ ମନକୁ ବୁଝେଇ ଦେଇ ତୁନି ହୋଇ ରହିଲେ। ବିନୋଦ ବାବୁଙ୍କୁ ଦଶ ବର୍ଷ ବୟସ ହେଲାବେଳକୁ ତାଙ୍କ ପିତା ସଂସାର ଛାଡ଼ି ଚାଲିଯାଇଥିଲେ।

## ଭାଗ୍ୟବାନ ଭଣଜା

ବାଳକ ବିନୋଦ ନାଗଣପୁରଠାରେ ମାମୁଁ ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଘରେ ୧୯୧୭ ମସିହାଠାରୁ ୧୯୨୨ ମସିହା ପର୍ଯ୍ୟନ୍ତ ପାଞ୍ଚ ବର୍ଷ ରହି ପାଠ ପଢ଼ିଥିଲେ। ସେଠାରେ ରହିବା ସମୟ ଭିତରେ ତାଙ୍କ ପରିଚୟର ଦିଗ୍‌ବଳୟ ବିସ୍ତାରିତ ହୋଇଥିଲା। ସେତେବେଳକୁ ତାଙ୍କ ମାମୁଁ ଅଧ୍ୟାପକ ମହାନ୍ତି ରେଭେନ୍ସା କଲେଜ ଇଷ୍ଟ ହଷ୍ଟେଲ୍‌ର ସୁପରିନ୍‌ଟେଣ୍ଡେଣ୍ଟ। ନାଗଣପୁର ଓଡ଼ିଶାର ଗୋଟିଏ ସୁପରିଚିତ ଶିକ୍ଷିତ ଗାଁ। ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ବହୁ ଆତ୍ମୀୟ ଓ ବନ୍ଧୁବାନ୍ଧବ ଉଚ୍ଚଶିକ୍ଷିତ ପରିବାର ଓଡ଼ିଶାର ବିଭିନ୍ନ ସ୍ଥାନରେ ରହିଥାନ୍ତି। ବାଳକ ବିନୋଦ ସେଠାରେ ପିଲାଦିନେ ରହିଥିବାବେଳେ ସେମାନଙ୍କ ଘରକୁ ଯିବା ଆସିବା କରି ପରିଚିତ ହୋଇଥିଲେ। ଏହି ବିଶିଷ୍ଟ ବ୍ୟକ୍ତିମାନଙ୍କ ଭିତରୁ ଇଂଜିନିଅର ବନବିହାରୀ ମହାନ୍ତି, ଆଇନଜୀବୀ ବିନୋଦବିହାରୀ ମହାନ୍ତି ଓ କୃଷି ବିଶେଷଜ୍ଞ ସୀତାନାଥ ମହାନ୍ତି ପ୍ରମୁଖଙ୍କ ସହିତ ପିଲାଦିନୁ ତାଙ୍କର ଘନିଷ୍ଠ ପରିଚୟ ଘଟିଥିଲା।

ବିନୋଦ କାନୁନ୍‌ଗୋ ରେଭେନ୍ସା କଲେଜରେ ଅଧ୍ୟୟନ କରିବାର ସୁଯୋଗ ପାଇ ନ ଥିଲେ ମଧ୍ୟ ତାଙ୍କ ମାମୁଁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସହିତ ୧୯୨୨ ମସିହାଠାରୁ ୧୯୩୦ ମସିହା ପର୍ଯ୍ୟନ୍ତ ସେ ରେଭେନ୍ସା କଲେଜର ଇଷ୍ଟ ହଷ୍ଟେଲରେ ରହିଥିଲେ। ସେହିଠାରେ ରହି ସେ ରାଣୀହାଟ ମାଇନର ସ୍କୁଲରେ ଅଧ୍ୟୟନ କଲେ ଏବଂ ସେଠାରୁ ବୃତ୍ତି ପାଇ ୧୯୨୮ ମସିହାରେ ରେଭେନ୍ସା କଲିଜିଏଟ୍ ସ୍କୁଲରେ ନାମ ଲେଖାଇଲେ। ସେତେବେଳକୁ ତାଙ୍କ ମାମୁଁ ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଜଣେ ବିଶିଷ୍ଟ ଅଧ୍ୟାପକ ଓ ପ୍ରଖ୍ୟାତନାମା ସାହିତ୍ୟିକ

ଭାବରେ ସୁପରିଚିତ ଥିଲେ। ରେଭେନ୍ସା କଲେଜ ହତା ଭିତରେ ରହୁଥିବା ଅଧ୍ୟାପକମାନଙ୍କ ଭିତରେ ଅନେକ ତାଙ୍କର ଆତ୍ମୀୟ ଓ ବନ୍ଧୁବାନ୍ଧବ ଥିଲେ ଓ ଅନେକ ଥିଲେ ତାଙ୍କର ଗୁଣମୁଗ୍ଧ। ବିନୋଦ ବାବୁ ଅନେକ ସମୟରେ ସେହି ଅଧ୍ୟାପକମାନଙ୍କ ଘରକୁ ପିଠାପଣା ଦେବାକୁ ଯାଉଥିଲେ। ଏହିପରି ଯିବା ଆସିବା କରିବା ଭିତରେ ସେହି ଅଧ୍ୟାପକମାନଙ୍କ ସହିତ ତାଙ୍କର ଘନିଷ୍ଠ ପରିଚୟ ହୋଇ ଯାଇଥିଲା।

ସର୍ବୋପରି ସେତେବେଳେ ଏହି ରେଭେନ୍ସା କଲେଜ ଥିଲା ଓଡ଼ିଶାର ସର୍ବୋଚ୍ଚ ଶିକ୍ଷାନୁଷ୍ଠାନ। ଓଡ଼ିଆଭାଷୀ ସବୁ ଅଞ୍ଚଳର ଛାତ୍ରମାନେ ଏଠାରେ ଆସି ଅଧ୍ୟୟନ କରୁଥିଲେ। ସେତେବେଳେ ଉପକୂଳବର୍ତ୍ତୀ ଓଡ଼ିଆଭାଷୀ ଅଞ୍ଚଳ, ସମ୍ବଲପୁର ଜିଲ୍ଲା ଓ କେତୋଟି ପୂର୍ବତନ ଗଡ଼ଜାତ ମିଶି ଓଡ଼ିଶା ଡିଭିଜନ ନାମରେ ବିହାର ସହିତ ମିଶି ବିହାର-ଓଡ଼ିଶା ପ୍ରଦେଶ ଭାବରେ ରହିଥିଲା। ମାତ୍ର ସବୁ ଓଡ଼ିଆଭାଷୀ ଅଞ୍ଚଳର ଛାତ୍ରମାନେ ଉଚ୍ଚଶିକ୍ଷା ଲାଭ କରିବାପାଇଁ ରେଭେନ୍ସା କଲେଜକୁ ଆସୁଥିଲେ। ରେଭେନ୍ସା କଲେଜର କନିକା ଲାଇବ୍ରେରୀ ଥିଲା ସେତେବେଳେ ଓଡ଼ିଆଭାଷୀ ଅଞ୍ଚଳର ସବୁଠୁ ବଡ଼ ଲାଇବ୍ରେରୀ। ଏଠାରେ ଇଂରାଜୀ ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକାଠୁ ଆରମ୍ଭ କରି ଇଂରାଜୀ ଓ ଓଡ଼ିଆ ଭାଷାର ବହୁ ମୂଲ୍ୟବାନ ପୁସ୍ତକ ଗଚ୍ଛିତ ଥିଲା। ରେଭେନ୍ସା କଲେଜ ହଷ୍ଟେଲରେ ତାଙ୍କ ମାମୁଁଙ୍କ ସହିତ ରହିଥିଲାବେଳେ ସେ କେତେକ ବିଶିଷ୍ଟ ବୈଜ୍ଞାନିକ ଓ ଶିକ୍ଷାବିତ୍‌ଙ୍କ ସହିତ ପରିଚିତ ହୋଇଥିଲେ। ପରବର୍ତ୍ତୀ ଜୀବନରେ "ଜ୍ଞାନମଣ୍ଡଳ" ପ୍ରଣୟନବେଳେ ସେମାନଙ୍କଠାରୁ ସାହାଯ୍ୟ ଗ୍ରହଣ କରିଥିଲେ। ସର୍ବୋପରି ରେଭେନ୍ସା କଲେଜର କନିକା ଲାଇବ୍ରେରୀରେ ବସି ସେ ଜ୍ଞାନମଣ୍ଡଳପାଇଁ ପ୍ରାଥମିକ ତଥ୍ୟାବଳି ସଂଗ୍ରହ କରିଥିଲେ। ସେଥିପାଇଁ ସେ ଯଥାର୍ଥରେ କହିଯାଇଛନ୍ତି ଯେ ରେଭେନ୍ସା କଲେଜ ହତା ଥିଲା ତାଙ୍କ ସାଧନାର ପୀଠ। ତାଙ୍କ ମାମୁଁ ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପାଖରେ ରହି ନ ଥିଲେ ତାଙ୍କୁ ଏହି ଅପୂର୍ବ ସୁଯୋଗ ମିଳି ନ ଥାନ୍ତା।

## କଲିଜିଏଟ୍ ହାଇସ୍କୁଲର ମେଧାବୀ ଛାତ୍ର

ରାଣୀହାଟ ମାଇନର ସ୍କୁଲରୁ ବୃତ୍ତି ପାଇ ସେ ୧୯୨୮ ମସିହାରେ କଟକ କଲିଜିଏଟ୍ ସ୍କୁଲରେ ନାମ ଲେଖାଇଲେ। ପ୍ରାଥମିକ ବିଦ୍ୟାଳୟରେ ପଢ଼ିବା ବେଳଠାରୁ ସେ ଜଣେ ମେଧାବୀ ଛାତ୍ର ବୋଲି ଜଣା ପଡ଼ିଥିଲା। ସେତେବେଳକୁ କଲିଜିଏଟ୍ ସ୍କୁଲକୁ ଓଡ଼ିଶାର ସବୁ ଅଞ୍ଚଳର ବୃତ୍ତିଧାରୀ ମେଧାବୀ ଛାତ୍ର ତଥା ଧନୀ ଓ ଜମିଦାରଙ୍କ ପିଲାମାନେ ପଢ଼ିବାକୁ ଆସୁଥିଲେ। ନେତାଜୀ ସୁଭାଷଚନ୍ଦ୍ର ବୋଷ ଏହି ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ କଲେଜରେ ପଢ଼ିବାପାଇଁ କଲିକତା ଯାଇଥିଲେ। ବିନୋଦ ବାବୁ କଲିଜିଏଟ୍ ସ୍କୁଲରେ ଅଧ୍ୟୟନ କରୁଥିବାବେଳେ ବିଜୁ ପଟ୍ଟନାୟକ, ସୁରେନ୍ଦ୍ରନାଥ ପଟ୍ଟନାୟକ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ବିପିନବିହାରୀ ମହାନ୍ତି, ବିଶ୍ୱନାଥ ପଣ୍ଡିତ, ଅଶୋକ ଦାସ,

ଅନନ୍ତ ପଟ୍ଟନାୟକ ପ୍ରମୁଖ ତାଙ୍କ ତଳ ଉପର ଶ୍ରେଣୀରେ ଏକ ସମୟରେ ପଢୁଥିଲେ। ତାଙ୍କର ଏହି ସହପାଠୀମାନେ ଭବିଷ୍ୟତରେ ରାଜନୀତି, ଶିକ୍ଷା ଓ ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ସୁଖ୍ୟାତି ଅର୍ଜନ କରିଛନ୍ତି। ଯେଉଁମାନେ ତାଙ୍କ ସାଙ୍ଗରେ ପଢ଼ା ଛାଡ଼ିଥିଲେ ଓ ଯେଉଁମାନେ ପଢ଼ା ଛାଡ଼ି ନ ଥିଲେ ସେହିଭଳି ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ତାଙ୍କର ଶେଷଜୀବନ ପର୍ଯ୍ୟନ୍ତ ଘନିଷ୍ଠ ସଂପର୍କ ରହିଥିଲା। ଏହିଭଳି ଆତ୍ମୀୟ ସଂପର୍କ ରହିଆସିଥିବା ବିଶିଷ୍ଟ ବ୍ୟକ୍ତିଙ୍କ ବିଷୟରେ ବିନୋଦ ବାବୁ ତାଙ୍କ ପ୍ରଣୀତ ''ଋଣ ପରିଶୋଧ''ଓ ''ପାଠ ପଢେ ପଢେ ଅପାଠୁଆ'' ପୁସ୍ତକରେ ବର୍ଣ୍ଣନା କରିଛନ୍ତି।

## ପଢ଼ା ଛାଡ଼ି ସ୍ୱାଧୀନତାସଂଗ୍ରାମୀ ହେଲେ

କଲିଜିଏଟ୍ ହାଇସ୍କୁଲରେ ନାମ ଲେଖାଇବାପରେ ବିନୋଦ ବାବୁ ତାଙ୍କ ମାମୁଁ ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସାଙ୍ଗରେ ଇଷ୍ଟ ହଷ୍ଟେଲରେ ରହି ସେଠାରୁ ସ୍କୁଲକୁ ଯିବା ଆସିବା କରି ପଢୁଥାନ୍ତି। ଶ୍ରେଣୀରୁ ବାର୍ଷିକ ପରୀକ୍ଷା ଶେଷରେ ଉତ୍ତୀର୍ଣ୍ଣ ହେଲାବେଳେ ଉଚ୍ଚ ସ୍ଥାନ ଅଧିକାର କରନ୍ତି। ତେଣୁ ଶିକ୍ଷକମାନଙ୍କର ତାଙ୍କପ୍ରତି ଅଧିକ ଶ୍ରଦ୍ଧା ଓ ଅନ୍ୟ ସହପାଠୀମାନଙ୍କର ତାଙ୍କ ପ୍ରତି ଅଧିକ ସମ୍ମାନ ଥାଏ। ତାଙ୍କ ବାପା ତ ଅନେକ ଦିନୁ ଚାଲିଯାଇଥାନ୍ତି। ପୁଅ ଭଲ ପଢୁଥିବାରୁ ମା'ଙ୍କର ଆଶାଥାଏ ଯେ ସେ ବଡ଼ ଚାକିରିଟିଏ କରିବ। ସେ ନିଜେ ଆଶା କରୁଥାନ୍ତି ଯେ ସେ ଅନ୍ତତଃ ପଢ଼ାଶେଷରେ ଜଣେ ଅଧ୍ୟାପକ ହେବେ।

ସେ ଦଶମ ଶ୍ରେଣୀରେ ଅଧ୍ୟୟନ କରୁଥିବାବେଳେ ଦେଶରେ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୋଇଗଲା ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ଭାବରେ। ବାଲେଶ୍ୱର ଜିଲା ଅନ୍ତର୍ଗତ ସମୁଦ୍ରକୂଳବର୍ତ୍ତୀ ଇଞ୍ଚୁଡ଼ିଠାରେ ଲୁଣ ମାରିବାପାଇଁ ପ୍ରଥମ ସତ୍ୟାଗ୍ରହୀ ପଦଯାତ୍ରୀ ଦଳ ବାହାରିଲେ ୧୯୩୦ ମସିହା ଏପ୍ରିଲ ୬ ତାରିଖରେ କାଠଯୋଡ଼ି ନଦୀ କୂଳସ୍ଥ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ବାସ ଭବନଠାରୁ। ସେତେବେଳକୁ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଉଚ୍ଚ ସରକାରୀ ଚାକିରି ଛାଡ଼ି ଦେଇ ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ନେଇଥାନ୍ତି। ତାଙ୍କ ସଂଗ୍ରାମର ସାଥୀ ଥିଲେ ପତ୍ନୀ ପୂଜ୍ୟା ରମା ଦେବୀ। ଓଡ଼ିଶାର ଯୁବକମାନେ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ବ୍ୟକ୍ତିତ୍ୱ ଓ ନେତୃତ୍ୱ ପ୍ରତି ଯେପରି ଆକୃଷ୍ଟ ହୋଇଥିଲେ; ପୂଜ୍ୟା ରମା ଦେବୀ ଥିଲେ ଓଡ଼ିଶାର ଅଗଣିତ ନାରୀଙ୍କପାଇଁ ଆକର୍ଷଣର କେନ୍ଦ୍ର। ବିନୋଦ କାନୁନ୍‌ଗୋ ଯେଉଁ କଲିଜିଏଟ୍ ସ୍କୁଲରେ ଅଧ୍ୟୟନ କରୁଥିଲେ ସେହି ସ୍କୁଲ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ବାସଭବନ ନିକଟରେ। ଆହୁରି ନିକଟରେ ତାଙ୍କ ଘର ପାଚିରିକୁ ଲାଗି ସନ୍‌ସାଇନ ଖେଳ ପଡ଼ିଆ, ଯେଉଁଠିକି ଛାତ୍ର ବିନୋଦ ପ୍ରତିଦିନ ଖେଳିବାକୁ ଆସନ୍ତି। ଚୌଧୁରୀଙ୍କ ବାସ ଭବନ ହତାରେ ପ୍ରତିଦିନ ସକାଳେ ଜାତୀୟ ପତାକା ଉତ୍ତୋଳନ କରାଯାଏ। ସେହି ଘରେ ରହି ତାଲିମ ପାଉଥିବା କିଶୋର

ସ୍ୱାଧୀନତାସଂଗ୍ରାମୀ ଯାହାଙ୍କୁ ବାନରସେନା ବୋଲି କୁହାଯାଉଥିଲା ସେମାନେ ଏହି ପତାକା ଉତ୍ତୋଳନରେ ଯୋଗ ଦିଅନ୍ତି। ବାହାରୁ ଅନେକ ପିଲା ଆସି ମଧ୍ୟ ଏଥିରେ ଯୋଗ ଦେଉଥାନ୍ତି। ସନ୍ଧ୍ୟାବେଳେ ପାଖ କାଠଯୋଡ଼ି ନଦୀ ବାଲିରେ ସଭା ହୁଏ। ଅନ୍ୟାନ୍ୟ ଛାତ୍ରଙ୍କ ସହ କିଶୋର ବିନୋଦ ଏସବୁ କେତେଥର ଦେଖି ଏଥିରେ ଯୋଗ ଦେବାପାଇଁ ଆଗ୍ରହ ପ୍ରକାଶ କରିଥିଲେ।

ଏପ୍ରିଲ ୬ ତାରିଖରେ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଲବଣ ସତ୍ୟାଗ୍ରହପାଇଁ ପ୍ରଥମ ସତ୍ୟାଗ୍ରହୀ ଦଳ ପଦଯାତ୍ରା କରିବା ସଙ୍ଗେ ସଙ୍ଗେ ବହୁ ସ୍ୱାଧୀନତା ସଂଗ୍ରାମୀ ଗାଁ ଗହଳରେ ଚାରିଆଡ଼େ ବୁଲି ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର କରୁଥିଲେ। କଟକ ସହରରେ ଦଳ ଦଳ ହୋଇ ବାନର ସେନା ଜାତୀୟକବି ବୀରକିଶୋର ଦାସଙ୍କ ରଚିତ ମର୍ମସ୍ପର୍ଶୀ ଜାତୀୟ ସଂଗୀତ ଗାଇ ବୁଲନ୍ତି। ଛାତ୍ର ବିନୋଦ କଲିଜିଏଟ୍ ସ୍କୁଲର ଗୋଟିଏ ଶ୍ରେଣୀରେ ବସି ଶିକ୍ଷକଙ୍କଠାରୁ ପାଠ ଶୁଣୁଥିଲା ବେଳେ ସେହି ବାଟ ଦେଇ ଦଳେ ବାନରସେନା କବି ବୀରକିଶୋରଙ୍କ ଗୀତ ବୋଲିବୋଲି ଗଲେ-

ରଣସମୟରେ ବହି ଘୋଷିବାକୁ
ମୋତେ ଆଉ ତୁମେ ବଳାନା
ଛାତିର ରକତ ତାତି ଉଠେ ମୋର
ବାଜିବାରୁ ଯୁଦ୍ଧ ବାଜଣା
ଘନ ଘନ ବାଜି ଉଠେ ରଣଭେରୀ
ମଦମତ୍ତ ଆଜି ଆମର ବଇରୀ
ମୋ'ଦେଶ ଦେବତା ଛାତିରକ୍ତ ଲାଗି
ଲହ ଲହ ତାର ରସନା
କି ବହି ଘୋଷିବି ପଢ଼ିବି କି ପାଠ
କି ଅଙ୍କ କଷିବି ହୋଇ ଗବକାଠ
ଯୁବକ ହୋଇକି ବକ ହୋଇବି ମୁଁ
ବିବେକକୁ କରି ବଂଚନା
ଯୁଦ୍ଧ ଇତିହାସ ହୋଇଲେ ଗଠିତ
ଶୁଣି ବଂଶଧର ହୋଇବେ ଲଜ୍ଜିତ
ନରହନ୍ତାର କଂସେଇଶାଳେ ମୁଁ
ଲେଖୁଥିଲି ବସି ରଚନା।

ଜାତୀୟ ପତାକା ଉତ୍ତୋଳନ ଓ ସନ୍ଧ୍ୟାବେଳେ କାଠଯୋଡ଼ି ନଦୀ ବାଲିରେ ସଭା ଓ ସ୍ୱାଧୀନତାସଂଗ୍ରାମୀମାନଙ୍କର ଶୋଭାଯାତ୍ରାରେ ଉନ୍ମାଦନାମୟୀ ଜାତୀୟସଂଗୀତ

ଶୁଣି ଶୁଣି ଛାତ୍ର ବିନୋଦଙ୍କ ମନ ଉଚ୍ଛନ୍ନ ହେଲା। ପଢ଼ାରେ ମନ ଲାଗିଲା ନାହିଁ। ତାଙ୍କ ସାଙ୍ଗକୁ ସୁରେନ୍ଦ୍ରନାଥ ପଟ୍ଟନାୟକ ଓ ସୁରେନ୍ଦ୍ରନାଥ ଦ୍ୱିବେଦୀ ପ୍ରମୁଖ ସହପାଠୀମାନେ ଜୁଟିଲେ। ୧୯୩୦ ଏପ୍ରିଲ ୧୦ ତାରିଖ ଦିନ କଟକ ସହରର ଛାତ୍ରମାନଙ୍କର ଏକ ଶୋଭାଯାତ୍ରା ବାହାରିଲା ଏବଂ କଲିଜିଏଟ୍ ସ୍କୁଲ ସମେତ କଟକର ସବୁ ସ୍କୁଲ ଆଗରେ ପିକେଟିଙ୍ଗ ହୋଇ ଛାତ୍ରମାନଙ୍କୁ ସ୍କୁଲ ଭିତରକୁ ଛାଡ଼ି ଦିଆଗଲା ନାହିଁ। କଲିଜିଏଟ୍ ସ୍କୁଲ ପ୍ରଧାନ ଫାଟକ ନିକଟରେ ରହି ଯେଉଁ ଦଶ ଜଣ ଛାତ୍ର ପିକେଟିଙ୍ଗ କରି ଛାତ୍ରମାନଙ୍କୁ ଭିତରକୁ ଛାଡୁ ନ ଥିଲେ, ତାଙ୍କ ଭିତରେ ଜଣେ ଥିଲେ ଦଶମ ଶ୍ରେଣୀର ଛାତ୍ର ବିନୋଦ କାନୁନ୍‌ଗୋ। ସେଦିନ ସେ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତକୁ ଜଳାଞ୍ଜଳି ଦେଇ ମାମୁଁଙ୍କ କ୍ରୋଧକୁ ଭ୍ରୂକ୍ଷେପ ନ କରି ସ୍କୁଲ ଛାଡ଼ି ରାସ୍ତା ଉପରକୁ ବାହାରି ପଡ଼ିଥିଲେ। ସେଦିନ ସନ୍ଧ୍ୟାବେଳେ କାଠଯୋଡ଼ି ନଦୀ ବାଲି ସଭାରେ ଯେଉଁ ୧୮ଜଣ ସ୍କୁଲ କଲେଜ ଛାତ୍ର ପଢ଼ାପଢ଼ି ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଛନ୍ତି ବୋଲି ଘୋଷଣା କରାଯାଇ ଥିଲା, ସେମାନଙ୍କ ଭିତରେ ଥିଲେ- ବିନୋଦ କାନୁନ୍‌ଗୋ, ସୁରେନ୍ଦ୍ରନାଥ ପଟ୍ଟନାୟକ, ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ବିପିନ ବିହାରୀ ମହାନ୍ତି। ସମସ୍ତେ ବୃତ୍ତିଧାରୀ ଓ କଲିଜିଏଟ୍ ସ୍କୁଲର ଦଶମ ଶ୍ରେଣୀର ମେଧାବୀ ଛାତ୍ର। ଏମାନେ ସ୍ୱାଧୀନତା ସଂଗ୍ରାମୀ ହୋଇ ରହିଲେ- ଆଉ ପାଠ ପଢ଼ିଲେ ନାହିଁ।

## ଡକ୍ଟର ରାଧାନାଥ ରଥ ତାଙ୍କୁ ହାତ ଧରି ପଢ଼ାଇଲେ

ପଢ଼ାପଢ଼ି ଛାଡ଼ିବାପରେ ବିନୋଦ ବାବୁ ସେତେବେଳର ସ୍ୱାଧୀନତା ସଂଗ୍ରାମର ପରିଚାଳକ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଓ ନାରୀନେତ୍ରୀ ରମା ଦେବୀଙ୍କ ନିକଟକୁ ଯିବା ଆସିବା କଲେ। ସେ କେଉଁ କେଉଁ କାମ କରିବେ ଓ କିପରି କରିବେ ସେ ସଂପର୍କରେ ସେମାନଙ୍କଠାରୁ ତାଲିମ ନେଉଥିଲେ। ଏହି ସମୟରେ ଶ୍ରୀମତୀ ରମା ଦେବୀ ବିନୋଦ ବାବୁଙ୍କୁ ନେଇ 'ସମାଜ'ର ସହକାରୀ ସଂପାଦକ ଓ ପରିଚାଳକ ଡକ୍ଟର ରାଧାନାଥ ରଥଙ୍କ ସହିତ ପରିଚିତ କରାଇଦେଇଥିଲେ ଏବଂ ତାଙ୍କୁ କହିଥିଲେ ଯେ ବିନୋଦ ତାର ମାମୁଁ ଅଧ୍ୟାପକ ଆର୍ତ୍ତ ବାବୁଙ୍କ ଘରେ ରହି ପଢୁଥିଲା। ଏବେ ହଠାତ୍ ସେ ଆଶ୍ରମ ଜୀବନ ଯାପନପାଇଁ ଅଭ୍ୟସ୍ତ ହୋଇ ନାହିଁ। ତେଣୁ ଆପଣଙ୍କ ଘରେ ସେ ଓଳିଏ ଖାଇବ। ଆପଣ ତାକୁ କିଛି କାମ ଦେବେ ଓ କିଛି ବିଦ୍ୟା ଦେବେ। ସେଥିରେ ରାଧାନାଥ ବାବୁ ରାଜି ହୋଇଗଲେ। ସେତେବେଳକୁ 'ସମାଜ' ଅଫିସ ଥାଏ କଟକ ସହରର ନିମିଚଉଡ଼ି ଛକ ପାଖରେ। 'ସମାଜ' ଦୈନିକ ପତ୍ରିକାରେ ପରିଣତ ହୋଇଥାଏ ଏବଂ ଏହା ଥାଏ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତାବହ।

ଏହି ସମୟରେ ବ୍ରିଟିଶ ସରକାର ଜାତୀୟବାଦୀ ସଂବାଦପତ୍ରମାନଙ୍କ ଉପରେ କଡ଼ା ନଜର ରଖିଥାଆନ୍ତି ଓ ନାନା କଟକଣା ଭିତରେ ସଂବାଦପତ୍ରମାନ ପ୍ରକାଶ ପାଉଥାଏ। ସରକାରଙ୍କୁ ସୁହାଇଲା ଭଳି ସଂବାଦ ପ୍ରକାଶ ନ ପାଇଲେ ସେହି ସଂବାଦପତ୍ରକୁ ଜବତ କରି ନିଆ ହେଉଥାଏ। ସେହି ସଂବାଦ ପତ୍ର ଯେଉଁ ଅମାନତ ଟଙ୍କା ସରକାରଙ୍କ ପାଖରେ ଜମା ରଖିଥାନ୍ତି ତାକୁ ବାଜ୍ୟାପ୍ତ କରି ଦିଆ ହେଉଥାଏ। ଏହି ସମୟରେ ଦୈନିକ 'ସମାଜ' ମଧ୍ୟ କିଛି ଦିନ ବନ୍ଦ ହୋଇ ଯାଇଥିଲା। ସେତେବେଳେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପହଞ୍ଚାଇ ଦେବାପାଇଁ ଅନ୍ୟ କୌଣସି ସଂବାଦପତ୍ର ଓଡ଼ିଶାରେ ନ ଥିଲା। ଲୋକେ ଅନ୍ଧାରରେ ରହିବାଭଳି ହେଲେ। ନାନା ଗୁଜବ ପ୍ରଚାର ହୋଇ ଚାଲିଲା। ଏହି ସମୟରେ ବାହାରେ ଥିବା ସ୍ୱାଧୀନତା ସଂଗ୍ରାମୀମାନେ ରାଧାନାଥ ବାବୁଙ୍କ ସହିତ ମିଶି ଗୋଟିଏ ଉପାୟ ବାହାର କଲେ। ଠିକ୍ ହେଲା ଯେ ସପ୍ତାହରେ ତିନି ଚାରି ଥର କାଠଯୋଡ଼ି ନଦୀ ବାଲିରେ ସାଧାରଣ ସଭା କରାଯାଇ ସେଠାରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ଭାଷଣରେ ଶୁଣାଇ ଦିଆଯିବ। ଘଣ୍ଟାଏ ବକ୍ତୃତା ଦେଲାଭଳି ଲେଖା ରାଧାନାଥ ବାବୁ ବିନୋଦ ବାବୁଙ୍କୁ ଡାକି ଦେବେ ଏବଂ ସେହି ଲେଖା ସନ୍ଧ୍ୟାବେଳେ କାଠଯୋଡ଼ି ନଦୀବାଲିରେ ଆୟୋଜିତ ସଭାରେ ବିନୋଦ ବାବୁ ବା ଆଉ କେହି ସ୍ୱାଧୀନତା ସଂଗ୍ରାମୀ ପଢ଼ିଦେବେ। ଏହି କାର୍ଯ୍ୟ ବିଧିବଦ୍ଧ ଭାବରେ ଚାଲିଲା।

ରାଧାନାଥ ବାବୁଙ୍କର ଏହି ସବୁ ବକ୍ତୃତା ଲେଖିବାବେଳେ ବିନୋଦ ବାବୁ ତିନୋଟି ତାଲିମ ଏକାବେଳକେ ପାଇଯାଇଥିଲେ। ପ୍ରଥମତଃ ରାଧାନାଥ ବାବୁ ଦ୍ରୁତ ଗତିରେ ଡାକନ୍ତି। ତେଣୁ ବିନୋଦ ବାବୁଙ୍କର ଶୀଘ୍ର ଶୀଘ୍ର ଲେଖିବାର ଅଭ୍ୟାସ ହୋଇଗଲା। ଦ୍ୱିତୀୟରେ ରାଧାନାଥ ବାବୁ କିପରି ବହୁ ପୁସ୍ତକ ଓ ରିପୋର୍ଟ ଆଦିରୁ ତଥ୍ୟ ସଂଗ୍ରହ କରି ସାଙ୍ଗେ ସାଙ୍ଗେ ଡାକି ଦେଉଛନ୍ତି ତାହା ସେ ଲକ୍ଷ୍ୟ କରିଥିଲେ ଏବଂ ଶେଷରେ ରାଧାନାଥ ବାବୁ କହିଲାବେଳେ ଯେମିତି କହୁଛନ୍ତି, ସେମିତି ସଭାରେ କହିବାର ସେ ଅଭ୍ୟାସ କଲେ। ଭବିଷ୍ୟତରେ ସାଧାରଣ ସଭାରେ କହିବାପାଇଁ ଏତିକିବେଳୁ ତାଙ୍କର ଅଭ୍ୟାସ ହୋଇଗଲା।

ଏହି ସମୟରେ ବିନୋଦ ବାବୁ ରାଧାନାଥ ବାବୁଙ୍କଠାରୁ ଆଉ ଏକ ପ୍ରକାରର ତାଲିମ ମଧ୍ୟ ପାଇଥିଲେ। ସରକାରୀ କଟକଣା ଯୋଗୁ 'ସମାଜ' ପତ୍ରିକା ଯେତେବେଳେ ବନ୍ଦ ହୋଇଗଲା ଓ ଲୋକେ ସ୍ୱାଧୀନତା ସଂଗ୍ରାମର ଖବର ଜାଣିବାକୁ ବ୍ୟସ୍ତ ହୋଇପଡ଼ିଲେ ସେତେବେଳେ 'ସଂବାଦ' ବୋଲି ଗୋଟିଏ ସାମୟିକ ପତ୍ରିକା ପ୍ରକାଶ କରାଗଲା। ରାଧାନାଥ ବାବୁ ବିଷୟଗୁଡ଼ିକ ଡକି ଦିଅନ୍ତି। ବିନୋଦ ବାବୁ ତାକୁ ଟିପିନେଇ ସାଇକ୍ଲୋଷ୍ଟାଇଲ କରି ବାଣ୍ଟନ୍ତି। ଏହି ପତ୍ରିକାରେ ନିର୍ଭୀକ ଭାବରେ ଲେଖା ହେଉଥିଲା। ଏଇଥିରେ ବିନୋଦ ବାବୁଙ୍କର ସାମ୍ବାଦିକ ଜୀବନ ଆରମ୍ଭ ହୋଇଥିଲା। ଏଇଆକୁ ବିନୋଦ ବାବୁ ଲେଖିଛନ୍ତି ଯେ ରାଧାନାଥ ବାବୁ ତାଙ୍କୁ ହାତ ଧରି

ପଢ଼ାଇ ଥିଲେ। ପରେ ୧୯୩୪ ମସିହାରେ ଗାନ୍ଧିଜୀଙ୍କର ପୁରୀଠାରୁ ଭଦ୍ରକ ପର୍ଯ୍ୟନ୍ତ ହରିଜନ ଗସ୍ତବେଳେ ସେ ତାଙ୍କ ସହିତ ରହି ଗାନ୍ଧିଜୀଙ୍କ ଗସ୍ତର ବିବରଣୀ 'ସମାଜ' ପତ୍ରିକାକୁ ପଠାଉଥିଲେ। ଏହା ଫଳରେ ବିନୋଦ କାନୁନ୍‌ଗୋଙ୍କ ସାଂବାଦିକତା ଏକ ପ୍ରକାର ଦୋରସ୍ତ ହୋଇଯାଇଥିଲା।

## ସ୍କୁଲକୁ ଫେରାଇ ଆଣିବାକୁ ମାମୁଁଙ୍କ ଶେଷ ଚେଷ୍ଟା

ବିନୋଦ କାନୁନ୍‌ଗୋ ନିଜ ଇଚ୍ଛାରେ ପଢ଼ା ଛାଡ଼ିଦେଇ ଚାଲିଗଲେ ମଧ୍ୟ ମାମୁଁ ଅଧ୍ୟାପକ ଆର୍ତ୍ତ ବାବୁ ପୁଣି ତାଙ୍କୁ ସ୍କୁଲକୁ ଫେରାଇ ଆଣିବାକୁ ଶେଷ ଚେଷ୍ଟା କଲେ। ମେଧାବୀ ଛାତ୍ର ଭଣଜା ବିନୋଦ ଅଧାରୁ ପଢ଼ାପଢ଼ି ଛାଡ଼ିଦେଇ ବୁଲିବ ଏହା ତାଙ୍କ ପକ୍ଷରେ ଦୁଃଖଦାୟକ ହେଲା। ଥରେ ତାଙ୍କୁ ଡାକି ଆଣି ମାଡ଼ ଦେଲେ। ସେ ଖସି ପଳାଇଲେ। ମାତ୍ର ଆର୍ତ୍ତ ବାବୁ ଛାଡ଼ିଲେ ନାହିଁ। ତାଙ୍କ ପିଛା ଲୋକ ଲଗାଇ ତାଙ୍କୁ ଘରକୁ କୌଣସିମତେ ନେଇ ଆସିବାପାଇଁ ଚେଷ୍ଟା କଲେ। କଲିଜିଏଟ୍ ସ୍କୁଲର ହେଡ୍‌ମାଷ୍ଟର ଓ ସେତେବେଳର କଟକ ଟ୍ରେନିଂ କଲେଜର ପ୍ରିନ୍‌ସିପାଲ ହଣ୍ଡରସନ୍ ସାହେବଙ୍କ ସହିତ ଆର୍ତ୍ତ ବାବୁ ପରାମର୍ଶ କଲେ। ସେମାନେ କହିଲେ ଯେ ବିନୋଦ ସ୍କୁଲକୁ ଫେରି ଆସିଲେ ଆମେ ତାଙ୍କୁ ନେଇଯିବୁ ଏବଂ ତା'ର ବୃତ୍ତି ଟଙ୍କା ଫେରାଇ ଦିଆଯିବ।

ଏହି ସମୟରେ ମାମୁଁଙ୍କଠାରୁ ଦୂରରେ ରହିବାପାଇଁ ବିନୋଦ ବାବୁ ଗୋଟିଏ ଜାଗାକୁ ଲୁଚିକରି ଚାଲିଯାଉଥିବାବେଳେ ମାମୁଁ ଜଗେଇ ଥିବା ଲୋକେ ତାଙ୍କୁ ଧରି ଗାଡ଼ିରେ ବସେଇ ମାମୁଁଙ୍କ ପାଖକୁ ନେଇ ଯାଇଥିଲେ। ସେଇଠି ତାଙ୍କ ମା ମଧ୍ୟ ଥିଲେ। ସେଠାରେ ସେ ଉପବାସରେ ରହିଲେ। ତାଙ୍କୁ ନ ଛାଡ଼ିଲେ ସେ କିଛି ଖାଇବେ ନାହିଁ ବୋଲି ଜିଦ୍ ଧରି ବସିଲେ। ତେଣୁ ତାଙ୍କ ମା କହିଲେ ଯେ ହଉ ତାକୁ ଛାଡ଼ିଦିଅ। ସେ ଯାହା କରିବ କରୁ, ବଞ୍ଚି ରହିଥାଉ। ବିନୋଦ ଯାଇ ଶ୍ରୀମତୀ ରମା ଦେବୀଙ୍କ ପାଖରେ ପହଞ୍ଚିଲେ। ପରେ ତାଙ୍କ ମା ମଧ୍ୟ ସେଇଠି ଯାଇ ପହଞ୍ଚିଲେ। ତାଙ୍କ ମା ପୁଅକୁ ଶ୍ରୀମତୀ ରମା ଦେବୀଙ୍କୁ ସମର୍ପି ଦେଇଗଲେ। ରମା ଦେବୀ ତାଙ୍କ ମା'ଙ୍କୁ ସାନ୍ତ୍ୱନା ଦେଇ କହିଥିଲେ ଯେ ଯେଉଁମାନେ ପଢ଼ାପଢ଼ି ଛାଡ଼ି ଦେଇ ଆସିଛନ୍ତି, ସେମାନେ ତାଙ୍କ ପୁଅ ଭଳି ରହିବେ।

## ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଭୂମିକା

ଏହାପରେ ସ୍ୱାଧୀନତାସଂଗ୍ରାମୀ ବିନୋଦ କାନୁନ୍‌ଗୋ ସେତେବେଳେ ଚାଲିଥିବା ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି କାରାବରଣ କରିବାକୁ ପ୍ରସ୍ତୁତ ହେଲେ। ତାଙ୍କୁ ପ୍ରଥମେ ସତ୍ୟାଗ୍ରହୀ ସଂଗ୍ରହ କରିବା ଦାୟିତ୍ୱ ଦିଆ ଯାଇଥିଲା।

ସେତେବେଳେ ସତ୍ୟାଗ୍ରହୀ ସଂଗ୍ରହ କରିବା ସହଜ କଥା ନ ଥିଲା। ଯେଉଁମାନେ ପୋଲିସଠାରୁ ମାଡ଼ ଖାଇ ଜେଲ ବରଣ କରିବାକୁ ପ୍ରସ୍ତୁତ ହେବେ, ଗୁଳିମାଡ଼ରେ ଜୀବନ ଦେବାକୁ ପ୍ରସ୍ତୁତ ହେବେ ସେହିଭଳି ଯୁବକଙ୍କୁ ସତ୍ୟାଗ୍ରହୀ ଭାବରେ ଗ୍ରହଣ କରାଯାଉଥିଲା। ସେତେବେଳେ ମଦ, ଗଞ୍ଜେଇ ଓ ଅଫିମ ଦୋକାନ ଆଗରେ ପିକେଟିଙ୍ଗ କରିବାପାଇଁ ଯାଉଥିବା ପିଲାମାନଙ୍କୁ ପୋଲିସ ଘୋଷାଡ଼ି ଆଣି ରାସ୍ତା ଉପରେ ପକାଇ ଦେଉଥିଲେ। ବୁଟ୍ ଜୋତାରେ ମାଡ଼ ଦେଉଥିଲେ। ସେହିଭଳି ଯୁବସତ୍ୟାଗ୍ରହୀଙ୍କୁ ପରିଚାଳନା କରିବା ଓ ସେମାନଙ୍କୁ ସାହସ ଦେବା କାର୍ଯ୍ୟର ଦାୟିତ୍ୱ ସେ ଗ୍ରହଣ କରିଥିଲେ।

## ପୁରୀ କଂଗ୍ରେସ ଅଧିବେଶନପାଇଁ ସ୍ୱେଚ୍ଛାସେବକ

୧୯୩୧ ମସିହାରେ ଲବଣ ସତ୍ୟାଗ୍ରହ ଚାଲିଥିଲାବେଳେ ଗାନ୍ଧି ଇରଉଇନ୍ ଚୁକ୍ତି ହୋଇ ସତ୍ୟାଗ୍ରହ କିଛି ଦିନ ସ୍ଥଗିତ ରହିଲା। ଏହି ସମୟରେ ୧୯୩୨ ମସିହାରେ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ପୁରୀଠାରେ ଅନୁଷ୍ଠିତ ହେବା ପାଇଁ ନିଷ୍ପତ୍ତି ହେଲା। ଏହି ନିଷ୍ପତ୍ତିରେ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀମାନଙ୍କ ଭିତରେ ଅପୂର୍ବ ଉତ୍ସାହ ଦେଖାଯାଇଥିଲା। ଏହି ଅଧିବେଶନପାଇଁ ଯେଉଁ ବିରାଟ ସ୍ୱେଚ୍ଛାସେବକ ବାହିନୀ ତାଲିମ ପାଇଲେ ତାର ପ୍ରଥମ ଦଳରେ ଅନ୍ୟମାନଙ୍କ ଭିତରେ ଥିଲେ ତରୁଣ ସ୍ୱାଧୀନତାସଂଗ୍ରାମୀ ବିନୋଦ କାନୁନ୍‌ଗୋ। ସେ ନିଜେ ତାଲିମ ନେଲେ। ଦୁଇଟି କଂଗ୍ରେସ ପ୍ରତିନିଧି କ୍ୟାମ୍ପର ସଫେଇ ଦେଖିବା ଓ ଶିକ୍ଷାର୍ଥୀମାନଙ୍କୁ ତାଲିମ ଦେବା ଥିଲା ତାଙ୍କ ଦାୟିତ୍ୱ। ବିଶେଷ ଭାବରେ ପାଇଖାନା ସଫା କରିବାପାଇଁ ସ୍ୱେଚ୍ଛାସେବକମାନଙ୍କୁ ସେ ତାଲିମ ଦେଉଥିଲେ। ଏହିପରି ଉତ୍ସାହ ଭିତରେ ପୁରୀ କଂଗ୍ରେସ ଅଧିବେଶନପାଇଁ ପ୍ରସ୍ତୁତି ଚାଲିଥିଲାବେଳେ ବ୍ରିଟିଶ ସରକାର ଜାତୀୟ କଂଗ୍ରେସ ଅନୁଷ୍ଠାନକୁ ବେଆଇନ ଘୋଷଣା କରିଦେଲେ। ପୁଣି ଅସହଯୋଗ ଆନ୍ଦୋଳନ ଚାଲିଲା। କଂଗ୍ରେସ ଅଧିବେଶନ ବନ୍ଦ ରହିଲା। ଅନ୍ୟ ସ୍ୱାଧୀନତାସଂଗ୍ରାମୀମାନଙ୍କ ସହିତ ବିନୋଦ କାନୁନ୍‌ଗୋ କାରାବରଣ କଲେ। ସେ ଥରକୁ ଥର ଜେଲକୁ ଯାଇ ପୁଣି ଖଲାସହୋଇ ଆସୁଥା'ନ୍ତି।

## ପାଠ ତାଙ୍କୁ ଛାଡ଼ିଲା ନାହିଁ

୧୯୩୦ ମସିହା ନଭେମ୍ବର ମାସରେ ସ୍ୱାଧୀନତାସଂଗ୍ରାମୀ ବିନୋଦ କାନୁନ୍‌ଗୋ ଗିରଫ ହୋଇ ବିହାରର ପାଟନା କ୍ୟାମ୍ପ ଜେଲରେ ରହିଥିଲେ। ସେତେବେଳକୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହୋଇ ନ ଥିଲା। ବିହାର ସହିତ ମିଶି ବିହାର-ଓଡ଼ିଶା ପ୍ରଦେଶ ହୋଇ ରହିଥିଲା। ପାଟନା କ୍ୟାମ୍ପ ଜେଲରେ ବିହାର ଓ

ଓଡ଼ିଶାର ପାଞ୍ଚ ହଜାର ପର୍ଯ୍ୟନ୍ତ ରାଜନୈତିକ ବନ୍ଦୀ ରହିଥିଲେ। ସେମାନଙ୍କ ଭିତରେ ବହୁ ଉଚ୍ଚଶିକ୍ଷିତ ବିଦ୍ୱାନ ବ୍ୟକ୍ତି ଥିଲେ। ସେମାନେ ଅଧାରୁ ପଢ଼ାଛାଡ଼ି ଆସି ଥିବା ସ୍ୱାଧୀନତାସଂଗ୍ରାମୀମାନଙ୍କୁ ନିୟମିତ ଭାବରେ ପଢ଼ାଇ ଦେଉଥିଲେ। ଏହି ଜେଲରେ ବିନୋଦ କାନୁନ୍‌ଗୋ ପୁଣି ପଢ଼ା ଆରମ୍ଭ କରିଥିଲେ। ସେ ଅଧାରୁ ପଢ଼ା ଛାଡ଼ିଥିଲେ ମଧ୍ୟ ପାଠ ତାଙ୍କୁ ଛାଡ଼ିଲା ନାହିଁ। ସେ ବିହାରର ବିଦ୍ୱାନ ରାମକୃଷ୍ଣ ବେନିପୁରୀ, ଓଡ଼ିଶାର ଗୋକୁଳାନନ୍ଦ ମହାନ୍ତି ଓ ଜଗନ୍ନାଥ ରଥ ପ୍ରମୁଖଙ୍କଠାରୁ ଇଂରାଜୀ ଭାଷା ଓ ବିହାରର ବିନୋଦାନନ୍ଦନ ଝାଙ୍କ ଠାରୁ ହିନ୍ଦୀ ଭାଷା ଶିକ୍ଷା କରିଥିଲେ। ବିନୋଦାନନ୍ଦନ ଝା ଇଂରାଜୀ ଭାଷା ଓ ସାହିତ୍ୟର ଉପଯୋଗିତା ବିଷୟରେ ତାଙ୍କୁ ଯାହା ବୁଝାଇ ଦେଇଥିଲେ ସେଥିରେ ସେ ବିଶେଷ ଆକୃଷ୍ଟ ହୋଇଥିଲେ। ଏହା ତାଙ୍କ ଭବିଷ୍ୟତ ଜୀବନରେ ସାହିତ୍ୟ ସାଧନାରେ ସହାୟକ ହୋଇଥିଲା।

## ଗାନ୍ଧିଜୀଙ୍କ ସହିତ ହରିଜନ ପଦଯାତ୍ରାରେ

୧୯୩୪ ମସିହାରେ ହରିଜନ ସମସ୍ୟାପ୍ରତି ଲୋକଙ୍କ ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ ଗାନ୍ଧିଜୀ ଓଡ଼ିଶାରେ ପୁରୀଠାରୁ ଭଦ୍ରକ ପର୍ଯ୍ୟନ୍ତ ପଦଯାତ୍ରା କଲେ। ବିନୋଦ ବାବୁ ଏହି ପଦଯାତ୍ରାବେଳେ ମୂଳରୁ ଶେଷ ପର୍ଯ୍ୟନ୍ତ ଗାନ୍ଧିଜୀଙ୍କ ସହିତ ରହିଥିଲେ। ସେ 'ସମାଜ' ଦୈନିକ ପତ୍ରିକାର ସଂବାଦଦାତା ରୂପେ କାର୍ଯ୍ୟ କରିଥିଲେ। ମାସକରୁ ଅଧିକ କାଳ ଏହି ଯାତ୍ରାବେଳେ ପ୍ରତିଦିନର ଗାନ୍ଧିଜୀଙ୍କ ପ୍ରାର୍ଥନାକାଳୀନ ଭାଷଣ, କର୍ମୀମାନଙ୍କ ସହିତ ଆଲୋଚନା ଓ ପଦଯାତ୍ରାବେଳେ ଘଟିଯାଉଥିବା ବହୁ ଆନୁସଙ୍ଗିକ ଘଟଣା ସେ 'ସମାଜ'କୁ ଲେଖି ପଠାଉଥିଲେ। ସେତେବେଳେ ଗାନ୍ଧିଜୀଙ୍କ ସହିତ ପଦଯାତ୍ରାରେ ରହିଥିବା ସ୍ୱନାମଧନ୍ୟ ସମାଜସେବୀ ଠକ୍କରବାପା ଓ ଲାଲା ଅଚିନ୍ତରାମ ପ୍ରମୁଖ ବିଶିଷ୍ଟ ବିଦ୍ୱାନମାନେ ଅନୁବାଦ ଜରିଆରେ ତାଙ୍କ ରିପୋର୍ଟ ପଢ଼ି ପ୍ରଶଂସା କରିଥିଲେ। ଏଥିରେ ସଂବାଦ ପତ୍ରକୁ ରିପୋର୍ଟ କରିବାରେ ତାଙ୍କ ହାତ ଦୋରସ୍ତ ହୋଇଯାଇଥିଲା। ଓଡ଼ିଶାରେ ଗାନ୍ଧିଜୀଙ୍କ ପଦଯାତ୍ରା ବିଷୟରେ ସେ ଖଣ୍ଡିଏ ସୁନ୍ଦର ପୁସ୍ତକ ମଧ୍ୟ ଲେଖିଛନ୍ତି।

## ବରୀ ଆଶ୍ରମରେ ତାଙ୍କର ନୂତନ ତାଲିମ କେନ୍ଦ୍ର

୧୯୩୪ ମସିହାରେ ମହାତ୍ମା ଗାନ୍ଧି ଓଡ଼ିଶାରେ ତାଙ୍କ ହରିଜନ ଗସ୍ତ ଶେଷରେ ରଚନାତ୍ମକ କର୍ମୀମାନଙ୍କୁ ପରାମର୍ଶ ଦେଲେ ଯେ ସେମାନେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ରହିଯାଇ ସେଠାରେ ସବୁ ପ୍ରକାର ରଚନାତ୍ମକ କାର୍ଯ୍ୟ କରି ଲୋକଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନ କରନ୍ତୁ। ଗାନ୍ଧିଜୀ ଅନୁଭବ କରିଥିଲେ ଯେ ସ୍ୱାଧୀନତା ସଂଗ୍ରାମୀମାନେ ଲୋକଙ୍କଠାରୁ ଦୂରେଇ ଯାଉଛନ୍ତି ଓ ସେମାନଙ୍କ

ଭିତରେ ଅବସାଦ ଆସି ଯାଉଛି। ଗାନ୍ଧିଜୀଙ୍କ ପରାମର୍ଶ ଅନୁସାରେ ବିଶିଷ୍ଟ ଗାନ୍ଧିବାଦୀ ନେତା ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଓ ପୂଜ୍ୟା ରମା ଦେବୀ ଚିର ବନ୍ୟା ପ୍ରପୀଡ଼ିତ ଯାଜପୁରର୍ ବରୀ ଅଞ୍ଚଳକୁ ତାଙ୍କର କର୍ମକ୍ଷେତ୍ର ରୂପେ ବାଛିନେଲେ ଏବଂ ସେ ଯେଉଁମାନଙ୍କୁ ତାଙ୍କ ସାଙ୍ଗରେ ନେବାକୁ ବାଛିଲେ ତାଙ୍କ ଭିତରେ ଥିଲେ ବିଶିଷ୍ଟ ସ୍ୱାଧୀନତାସଂଗ୍ରାମୀ ବିନୋଦ କାନୁନ୍‌ଗୋ। ସେ ବରୀ ଅଞ୍ଚଳରେ ୧୯୩୪ ମସିହାଠାରୁ ୧୯୩୮ ପର୍ଯ୍ୟନ୍ତ ଚାରି ବର୍ଷରୁ ଅଧିକ କାଳ ରହି ତୁଳାଭିଣାଠାରୁ ଆରମ୍ଭ କରି ମହୁଚାଷ ଓ ଗୋପାଳନ ପ୍ରଭୃତି ବିଭିନ୍ନ ପ୍ରକାର ରଚନାତ୍ମକ କାର୍ଯ୍ୟରେ ନିଜେ ତାଲିମ ପାଇ ଅନ୍ୟମାନଙ୍କୁ ତାଲିମ କରାଇଥିଲେ। ଏହା ଛଡ଼ା ସେ ସେହି ଅଞ୍ଚଳରେ ଖଜୁରି ରସ ଓ ତାଳ ରସରୁ ଗୁଡ଼ ତିଆରି ଶିଖେଇବା ଓ ରୋଗୀ ସେବା କାର୍ଯ୍ୟରେ ମଧ୍ୟ ଲାଗିଥିଲେ।

ରଚନାତ୍ମକ କାର୍ଯ୍ୟ କ୍ଷେତ୍ରରେ ଜଣେ ସାଧାରଣ ରଚନାତ୍ମକ କର୍ମୀ ଏବଂ ବିନୋଦ କାନୁନ୍‌ଗୋଙ୍କ ଭିତରେ ପ୍ରଭେଦ ଥିଲା ଯେ ବିନୋଦ ବାବୁ ଯାହା କରୁଥିଲେ ତାର ବୌଦ୍ଧିକ ଦିଗ ବୁଝିବାକୁ ଚେଷ୍ଟା କରୁଥିଲେ, ସେ ସଂବନ୍ଧରେ ଆନୁସଙ୍ଗିକ ସାହିତ୍ୟ ଅଧ୍ୟୟନ କରୁଥିଲେ ଏବଂ ବିଷଦ ଜ୍ଞାନ ଆହରଣ କରୁଥିଲେ। ମହୁଚାଷ ସଂବନ୍ଧରେ ଜାଣିବାପାଇଁ ସେ ମହୁଚାଷର ବିଭିନ୍ନ ପଦ୍ଧତିର ବୈଜ୍ଞାନିକ ଦିଗ ଅଧ୍ୟୟନ କରିଥିଲେ। ସେହିପରି ଗୋପାଳନ କଲାବେଳେ ବିଶିଷ୍ଟ ଗାନ୍ଧିବାଦୀ ଓ ବୈଜ୍ଞାନିକ ସତୀଶ ଦାସଗୁପ୍ତଙ୍କ ପ୍ରଣୀତ Cow in India (ଭାରତରେ ଗାଈ) ପୁସ୍ତକ ଉତ୍ତମ ରୂପେ ଅଧ୍ୟୟନ କରିଥିଲେ। ପରେ ସେ ନିଜେ ୧୮ଟି ମହୁବାକ୍ସ ରଖିଥିଲେ ଓ ଗାଈ ରଖିଥିଲେ। ଏ ସଂବନ୍ଧରେ ସେ ଯେଉଁ ସବୁ ପୁସ୍ତକ ଅଧ୍ୟୟନ କରିଥିଲେ ସେ ସବୁ 'ଜ୍ଞାନମଣ୍ଡଳ' ତଥା ପିଲାଙ୍କପାଇଁ ଲିଖିତ ପୁସ୍ତକ ରଚନାବେଳେ ଉପଯୋଗ କରିଥିଲେ।

ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ପରାମର୍ଶ କ୍ରମେ ବିନୋଦ ବାବୁ ବରୀ ଅଞ୍ଚଳର ଗୋଟିଏ ହରିଜନ ପରିବାର ଭିତରେ ରହିଥିଲେ। ସେତେବେଳେ ହରିଜନମାନେ ପାଳିଥିବା ଗାଈଙ୍କ ଦୁଧ ସବର୍ଣ୍ଣମାନେ କିଣୁ ନ ଥିଲେ। କାରଣ ସେମାନେ ରଖିଥିବା ଗାଈ ହରିଜନଙ୍କ ପାଣି ତୋରାଣି ପିଉଛନ୍ତି ଓ ସେମାନଙ୍କ ଅଇଣ୍ଠା ଭାତ ଖାଉଛନ୍ତି। ମାତ୍ର ବିନୋଦ ବାବୁ ହରିଜନଙ୍କ ଘରେ ରହିବା ପରେ ସେମାନଙ୍କଠାରୁ ଦୁଧ କିଣି ଖାଇଲେ ଏବଂ ତା'ପରେ ଅନ୍ୟମାନେ ସେମାନଙ୍କଠାରୁ ଦୁଧ କିଣି ଖାଇଲେ। ସେ ମଧ୍ୟ ହରିଜନମାନଙ୍କ ଭିତରେ ବହୁ କଷ୍ଟରେ ନିଶା ନିବାରଣ କରାଇଥିଲେ। ବରୀ ଅଞ୍ଚଳରେ ବିନୋଦ ବାବୁ ଓ ଅନ୍ୟ କର୍ମୀମାନେ ରହି ଯେଉଁ ସବୁ ଗଠନମୂଳକ କାମ କରିଥିଲେ ତା ଫଳରେ ସେ ଅଞ୍ଚଳରେ ସାଧାରଣ ଲୋକଙ୍କ ଭିତରେ ସାମାଜିକ ଓ ରାଜନୈତିକ ଜାଗରଣ ଦେଖା ଦେଇଥିଲା ଏବଂ ତାହା ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନବେଳେ ପ୍ରମାଣିତ ହୋଇଥିଲା।

## ରଚନାତ୍ମକ କାମ ଜରିଆରେ ତାଙ୍କର ବୌଦ୍ଧିକ ବିକାଶ

ବରୀ ଅଞ୍ଚଳରେ ରହି ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଓ ପୂଜ୍ୟା ରମା ଦେବୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହି ଚାରି ବର୍ଷ କାର୍ଯ୍ୟ କରି ସେ କେବଳ ଜଣେ ଦକ୍ଷ ରଚନାତ୍ମକ କର୍ମୀ ଭାବରେ ପରିଚିତ ହୋଇଥିଲେ ସେତିକି ନୁହେଁ, ଏହି ସମୟ ଭିତରେ ସେ ବିସ୍ତୃତ ଭାବରେ ଗାନ୍ଧି ସାହିତ୍ୟ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ ତଥା ବହୁ ଗାନ୍ଧିବାଦୀ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସହିତ ପରିଚିତ ହେବାର ସୁଯୋଗ ମଧ ପାଇଥିଲେ। ରଚନାତ୍ମକ କର୍ମୀମାନଙ୍କ ଜରିଆରେ ଗାନ୍ଧିଜୀ ଯେଉଁ କାମ କରିବାକୁ ଚାହିଁଥିଲେ, କର୍ମୀମାନେ ତାର ତାତ୍ପର୍ଯ୍ୟ ହୃଦୟଙ୍ଗମ ନ କରିପାରିବାରୁ ସେମାନଙ୍କର ବୌଦ୍ଧିକ ବିକାଶ ହେଲା ନାହିଁ; ମାତ୍ର ବିନୋଦ ବାବୁଙ୍କ ଭଳି କେତେକ ବୁଦ୍ଧିମାନ କର୍ମୀ ରଚନାତ୍ମକ କାର୍ଯ୍ୟପନ୍ଥା ପଛରେ ଯେଉଁ ଭାବନା ଥିଲା ତାହା ବୁଝିଥିଲେ। ବରୀରେ ରହିଥିବାବେଳେ ବିଶିଷ୍ଟ ଗାନ୍ଧିବାଦୀ ନେତା ପ୍ୟାରିଲାଲ, କାକା କାଲେଲକର, ମଶ୍ରୁୱାଲା ଓ ଧୋତ୍ରେଜୀ ପ୍ରମୁଖ ସେଠାକୁ ଆସିଥିଲେ। ବିନୋଦ ବାବୁ ସେଠାରେ ସେମାନଙ୍କ ସହିତ ଆଲୋଚନା ପ୍ରସଙ୍ଗରେ ବିଭିନ୍ନ ବିଷୟରେ ଜ୍ଞାନ ଲାଭ କରିଥିଲେ।

## ଗାନ୍ଧି ସେବା ସଂଘ ସମ୍ମିଳନୀରେ ତାଙ୍କର ସକ୍ରିୟ ଭୂମିକା।

୧୯୩୮ ମାର୍ଚ୍ଚ ମାସରେ ପୁରୀ ଜିଲା ଡେଲାଙ୍ଗଠାରେ ଗାନ୍ଧି ସେବା ସଂଘର ସମ୍ମିଳନୀ ଓ ତା ସହିତ ଏକ ମନୋଜ୍ଞ ପ୍ରଦର୍ଶନୀ ଅନୁଷ୍ଠିତ ହୋଇଥିଲା। ସେତେବେଳକୁ ଓଡ଼ିଶାରେ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ କାର୍ଯ୍ୟ କରୁଥିଲା। ଡେଲାଙ୍ଗ ଅଞ୍ଚଳର ବେରବୋଇଠାରେ ଏହି ସମ୍ମିଳନୀ ଆଠ ଦିନ ଧରି ଚାଲିଥିଲା। ଏହି ସମ୍ମିଳନୀରେ ମହାତ୍ମା ଗାନ୍ଧି, ଆଚାର୍ଯ୍ୟ କୃପାଳିନୀ, ରାଜେନ୍ଦ୍ର ପ୍ରସାଦ, ସର୍ଦାର ବଲ୍ଲଭଭାଇ ପଟେଲ, ମଶ୍ରୁୱାଲା ଓ ଧୋତ୍ରେଜୀ ପ୍ରମୁଖ ନେତୃସ୍ଥାନୀୟ ବ୍ୟକ୍ତି ଉପସ୍ଥିତ ଥିଲେ। ବିଭିନ୍ନ ରାଜ୍ୟର ପ୍ରାୟ ୮୦୦ ପ୍ରତିନିଧି ଏଥିରେ ଯୋଗ ଦେଇଥିଲେ। ଏହି ସମ୍ମିଳନୀରେ ଭାରତର ଭବିଷ୍ୟତ ରୂପରେଖ ସଂବନ୍ଧରେ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ହୋଇଥିଲା। ସମ୍ମିଳନୀରେ ଯୋଗଦେଇଥିବା ପ୍ରତିନିଧିଙ୍କପାଇଁ ନିକଟବର୍ତ୍ତୀ ଗାଁ ମାନଙ୍କରେ ମିଳୁଥିବା ଜିନିଷ ଖାଦ୍ୟ ପଦାର୍ଥ ରୂପେ ଉପଯୋଗ ହୋଇଥିଲା ଓ ବହୁ କମ ଜିନିଷ ବାହାରୁ ଅଣାଯାଇଥିଲା। ମହାତ୍ମା ଗାନ୍ଧିଙ୍କ ନିର୍ଦ୍ଦେଶମତେ ଏସବୁ କରାଯାଇଥିଲା। ଏହି ସମ୍ମିଳନୀ ପୂର୍ବରୁ ଆଖପାଖ ଗାଁ ମାନଙ୍କରେ ସଭା କରାଯାଇ କଂଗ୍ରେସ ମନ୍ତ୍ରିମଣ୍ଡଳଙ୍କ କାର୍ଯ୍ୟକ୍ରମ ଓ ଗାନ୍ଧି ସେବା ସଂଘର ଉଦ୍ଦେଶ୍ୟ ବୁଝାଇ ଦିଆ ହେଉଥିଲା। ଏହି ସଭାମାନଙ୍କରେ ଗାଁ ଲୋକଙ୍କୁ ସେମାନଙ୍କ ମତାମତ ପ୍ରକାଶ କରିବାର ସୁଯୋଗ ଦିଆ ଯାଉଥିଲା। ଏହି କାର୍ଯ୍ୟରେ ବିନୋଦ କାନୁନ୍‌ଗୋ ସଂଯୋଜକ ଭାବରେ କାର୍ଯ୍ୟ କରୁଥିଲେ। ଏହି ସମ୍ମିଳନୀରେ ଯୋଗ ଦେଇଥିବା ପ୍ରତିନିଧିଙ୍କ ଖାଦ୍ୟ ନିମନ୍ତେ ପନି

ପରିବା ଓ ଚାଉଳ ଆଦି ସଂଗ୍ରହ କରିବା ଦାୟିତ୍ୱରେ ମଧ୍ୟ ସେ ଥିଲେ। ପୂର୍ବରୁ ବରୀ ଅଞ୍ଚଳର ଯେଉଁ କର୍ମୀମାନଙ୍କୁ ସେ ରଚନାତ୍ମକ କାମରେ ତାଲିମ କରିଥିଲେ, ସେହିମାନଙ୍କୁ ଆଣି ସେ ଏହି କାର୍ଯ୍ୟ କରାଇଥିଲେ ଏବଂ ସମ୍ମିଳନୀ ସ୍ଥାନଟିକୁ ସବୁବେଳେ ସଫାସୁତୁରା ରଖିବା ଓ ପାଇଖାନା ସଫା କରାଇବା କାର୍ଯ୍ୟ ଦକ୍ଷତାର ସହିତ ସମ୍ପନ୍ନ କରିଥିଲେ।

ଏହି ସମ୍ମିଳନୀ ଉପଲକ୍ଷେ ଏଠାରେ ଯେଉଁ ପ୍ରଦର୍ଶନୀଟି ଅନୁଷ୍ଠିତ ହୋଇଥିଲା ତାହା ମହାତ୍ମା ଗାନ୍ଧିଙ୍କ ପରାମର୍ଶ କ୍ରମେ ଏକ ଜୀବନ୍ତ ପ୍ରଦର୍ଶନୀରେ ପରିଣତ ହୋଇଥିଲା। ସେତେବେଳର କଂଗ୍ରେସ ମନ୍ତ୍ରିମଣ୍ଡଳଙ୍କ ସହଯୋଗକ୍ରମେ ପ୍ରଦର୍ଶନୀ ଭିତରେ ବିଭିନ୍ନ ପ୍ରକାର ଶାଗ, ପନି ପରିବା ଗଛ ଓ ଫୁଲ ଗଛ ଲଗା ଯାଇଥିଲା। ପ୍ରଦର୍ଶନୀ ଭିତରେ ବିଭିନ୍ନ କୁଟୀର ଶିଳ୍ପର ନମୁନା ରଖା ଯାଇଥିଲା ଓ ଶିଳ୍ପୀମାନେ ନିଜେ ବସି ଜିନିଷ ତିଆରି କରି ଦେଖାଉଥିଲେ। ମହାତ୍ମା ଗାନ୍ଧି ପ୍ରଦର୍ଶନୀ ଦେଖି ସନ୍ତୋଷ ପ୍ରକାଶ କରିଥିଲେ ଏବଂ ଏହାକୁ ଏକ ଜୀବନ୍ତ ପ୍ରଦର୍ଶନୀ ବୋଲି କହିଥିଲେ। ଜଣେ କୃଷି ବିଶେଷଜ୍ଞଙ୍କ ସହଯୋଗରେ ବିନୋଦ ବାବୁ ଏହି ପ୍ରଦର୍ଶନୀର ସାଜସଜ୍ଜାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ।

ଏହି ଗାନ୍ଧି ସେବା ସଂଘ ସମ୍ମିଳନୀର ଆଲୋଚନାବେଳେ ବିନୋଦ କାନୁନ୍‌ଗୋ ଉପସ୍ଥିତ ରହୁଥିଲେ ଏବଂ ଆଲୋଚନାର ସାରାଂଶକୁ ସଂବାଦ ଆକାରରେ ସମାଜକୁ ପଠାଉ ଥିଲେ।

## ହରିଜନ ସେବକ

ବରୀ ଅଞ୍ଚଳରେ ଜଣେ ରଚନାତ୍ମକ କର୍ମୀଭାବରେ ଚାରି ବର୍ଷ କାର୍ଯ୍ୟ କରିବା ପରେ ବିନୋଦ ବାବୁ ଅନୁଭବ କଲେ ଯେ ଏହି ବନ୍ୟା ପ୍ରପୀଡ଼ିତ ସବୁଆଡୁ ବିଚ୍ଛିନ୍ନ ଅଞ୍ଚଳରେ ଆବଦ୍ଧ ରହି ନିଜର ମାନସିକ ଓ ବୌଦ୍ଧିକ ବିକାଶ ସମ୍ଭବ ହେବ ନାହିଁ। ସେ ଗୋଟିଏ ବୃହତ୍ତର କାର୍ଯ୍ୟକ୍ଷେତ୍ରକୁ ଚାଲିଯିବାକୁ ଚାହିଁଲେ। ସେହି ସମୟରେ ମହାତ୍ମା ଗାନ୍ଧି ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟକ୍ରମକୁ ବ୍ୟାପକ ଭାବରେ ଚଳେଇବାକୁ ଚାହୁଁଥିଲେ। ଓଡ଼ିଶାରେ ଆଚାର୍ଯ୍ୟ ହରିହର ଦାସ ସଭାପତି ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ସଂପାଦକ ଥାଇ ନିଖିଳ ଓଡ଼ିଶା ହରିଜନ ସେବା ସଂଘ ଗଠିତ ହୋଇ ସାରିଥିଲା। ଏହି ଅନୁଷ୍ଠାନ ପକ୍ଷରୁ ଯେଉଁ ଦୁଇ ଜଣ କର୍ମୀ ନିଯୁକ୍ତ ହୋଇ ଥିଲେ ସେମାନଙ୍କ ଭିତରୁ ଜଣେ ଥିଲେ ବିନୋଦ କାନୁନ୍‌ଗୋ। ସେ ମାସିକ ତିରିଶ ଟଙ୍କା ବେତନରେ କାମ ଆରମ୍ଭ କରିଥିଲେ। ଏହି କାର୍ଯ୍ୟରେ ସେ ସାତଟି ଜିଲ୍ଲା ବୁଲିବାର ସୁଯୋଗ ପାଇଲେ। ଏହି ଗସ୍ତବେଳେ ସେ ସରକାରୀ ସାହାଯ୍ୟ କ୍ରମେ ହରିଜନଙ୍କ ଉନ୍ନତି ନିମନ୍ତେ କିଛି କାର୍ଯ୍ୟ କରିଥିଲେ। ସେ ସମୟରେ ସେ 'ସମାଜ' ପତ୍ରିକାପାଇଁ ବହୁ ପ୍ରବନ୍ଧ ଲେଖିଥିଲେ।

## ଯୁଦ୍ଧ ଆରମ୍ଭବେଳେ ତାଙ୍କ ସାଂବାଦିକତା

୧୯୩୯ ମସିହା ସେପ୍ଟେମ୍ବର ମାସରେ ଦ୍ଵିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲାପରେ ବ୍ରିଟିଶ ସରକାର ଲୋକମତ ନ ନେଇ ଭାରତକୁ ଯୁଦ୍ଧରେ ମିତ୍ର ପକ୍ଷ ସହିତ ପୁରେଇ ଦେଲେ। ସଙ୍ଗେ ସଙ୍ଗେ ଜାତୀୟ କଂଗ୍ରେସ ତାର ପ୍ରତିବାଦ କରି ବିଭିନ୍ନ ରାଜ୍ୟର କଂଗ୍ରେସ ମନ୍ତ୍ରିମଣ୍ଡଳମାନଙ୍କୁ ଇସ୍ତଫା ଦେଇଦେବାପାଇଁ ନିର୍ଦ୍ଦେଶ ଦେଲେ। ସେହି ଦିନଠାରୁ ବ୍ରିଟିଶ ଶାସନ ସହିତ ଜାତୀୟ କଂଗ୍ରେସର ପୁଣି ଅସହଯୋଗ ଆରମ୍ଭ ହୋଇଗଲା। ସେତେବେଳକୁ ଓଡ଼ିଶାରେ 'ସମାଜ' ଏକମାତ୍ର ଦୈନିକ ପତ୍ରିକା। ତେଣୁ 'ସମାଜ' ଜରିଆରେ ଲୋକେ ଯୁଦ୍ଧର ଦୈନନ୍ଦିନ ଅଗ୍ରଗତି ତଥା କଂଗ୍ରେସ ଅନୁଷ୍ଠାନର ଯୁସବ୍ଧ ପ୍ରତି ମତିଗତି ଜାଣିବାପାଇଁ ଅଧିକ ଆଗ୍ରହ ପ୍ରକାଶ କଲେ। ଯୁଦ୍ଧର ଗତି ବୁଝିବାକୁ ଯୁଦ୍ଧରତ ଦେଶମାନଙ୍କ ସଂବନ୍ଧରେ ତଥା ଯୁଦ୍ଧରେ ବ୍ୟବହୃତ ଅସ୍ତ୍ରଶସ୍ତ୍ର ସଂବନ୍ଧରେ ଲୋକେ ଜାଣିବାକୁ ଚାହିଁଲେ। ସଂବାଦପତ୍ରମାନେ ସେହି ସବୁ ତଥ୍ୟ ଜଣାଇବେ ବୋଲି ଲୋକେ ଆଶା କଲେ। ଏହି ସମୟରେ, ଦୈନିକ 'ସମାଜ' ସଂପାଦକୀୟ ବୋର୍ଡ଼ର ପରିବର୍ତ୍ତନ ହେଲା ଏବଂ 'ସମାଜ' ସଂପାଦକୀୟ ବୋର୍ଡ଼ରେ ବିନୋଦ କାନୁନ୍‌ଗୋ ସ୍ଥାନ ପାଇଲେ। ସେ ବିଧିବଦ୍ଧ ଭାବରେ ସବୁ ସମୟଦେଇ ସାଂବାଦିକତା କଲେ। ଯୁଦ୍ଧ ବିଷୟରେ ଲୋକଙ୍କୁ ବୁଝାଇବାପାଇଁ ସେ ବିଶ୍ୱ ଇତିହାସ ଓ ଭୂଗୋଳକୁ ପୁଣି ଥରେ ନୂଆକରି ଅଧ୍ୟୟନ କଲେ ଓ ସେ ସଂବନ୍ଧରେ ପ୍ରବନ୍ଧମାନ 'ସମାଜ'ରେ ଲେଖିଥିଲେ। ପରବର୍ତ୍ତୀ ସମୟରେ 'ଜ୍ଞାନମଣ୍ଡଳ' ଓ ପିଲାଙ୍କପାଇଁ ଛୋଟ ଛୋଟ ବହି ଲେଖିବାରେ ଏହା ତାଙ୍କୁ ସାହାଯ୍ୟ କରିଥିଲା।

## "ସପ୍ତାସ୍ତ୍ର" ପୁସ୍ତକ ରଚନା

ଦ୍ଵିତୀୟ ମହାଯୁଦ୍ଧର ଅଗ୍ରଗତି ସଙ୍ଗେ ସଙ୍ଗେ ବିଭିନ୍ନ ରାଷ୍ଟ୍ରପକ୍ଷରୁ ଯେଉଁ ମାରଣାସ୍ତ୍ରମାନ ପ୍ରୟୋଗ କରାଗଲା, ସେ ସଂବନ୍ଧରେ ଲୋକେ ଅଧିକରୁ ଅଧିକ ଜାଣିବାପାଇଁ ଓ ବୁଝିବାପାଇଁ ଆଗ୍ରହ ପ୍ରକାଶ କଲେ। ଏ ସଂବନ୍ଧରେ ବିନୋଦ ବାବୁ 'ସମାଜ' ପତ୍ରିକାରେ କେତେଗୁଡ଼ିଏ ପ୍ରବନ୍ଧ ପ୍ରକାଶ କରିଥିଲେ। ସେସବୁକୁ ଏକାଠିକରି ଓ ସେ ବିଷୟରେ ଅଧିକ ତଥ୍ୟ ସହ ସେ 'ସପ୍ତାସ୍ତ୍ର' ବୋଲି ଖଣ୍ଡିଏ ପୁସ୍ତକ ଲେଖିଦେଲେ ଓ ସେହି ପୁସ୍ତକଟିକୁ ଗୋପବନ୍ଧୁ ସାହିତ୍ୟ ମନ୍ଦିର ପ୍ରକାଶ କରିଥିଲେ। ଏହି ପୁସ୍ତକରେ ଟ୍ୟାଙ୍କ, ମେସିନଗନ୍, ବାରେଜ୍ ବେଲୁନ୍, ବିମାନ ବିଧ୍ୱଂସୀ କମାଣ, ବୋମାବର୍ଷୀ ବିମାନ, ଡେଷ୍ଟ୍ରୟର ଓ କ୍ରୁଇଜର ପ୍ରଭୃତି ଅସ୍ତ୍ରଶସ୍ତ୍ର ବିଷୟରେ ସହଜ ଓ ସରଳ ଭାଷାରେ ବୁଝାଇ ଦିଆ ଯାଇଥିଲା। ପୁସ୍ତକଟି ପାଠକଙ୍କ

ଦ୍ୱାରା ଆଦୃତ ହୋଇ ବହୁ ସଂଖ୍ୟାରେ ବିକ୍ରି ହୋଇଥିଲା । ବିନୋଦ ବାବୁ ପ୍ରାୟ ଅଢ଼େଇ ବର୍ଷ ସମାଜ ସଂପାଦକୀୟ ବିଭାଗରେ କାର୍ଯ୍ୟକରି ଭାରତର ଶେଷ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାପାଇଁ 'ସମାଜ'ରୁ ବିଦାୟ ନେଇଥିଲେ ।

## ଶ୍ରୀମତୀ ଶଶିବାଳାଙ୍କ ସହିତ ବିବାହ

ଇତିମଧ୍ୟରେ ୧୯୪୦ ମସିହାରେ ବିନୋଦ ବାବୁ ଶ୍ରୀମତୀ ଶଶିବାଳାଙ୍କ ସହିତ ବିବାହ କରିସାରିଥିଲେ । ଶ୍ରୀମତୀ ଶଶିବାଳା ପୂଜ୍ୟା ରମା ଦେବୀଙ୍କ ନିକଟରେ କିଛି ଦିନ ତାଲିମ ପାଇ ଆସିବା ପରେ ବିନୋଦ ବାବୁଙ୍କର ଜଣେ ରାଜନୈତିକ ସହକର୍ମୀ ରୂପେ କାର୍ଯ୍ୟ କଲେ । ସେ ଶେଷ ସ୍ୱାଧୀନତା ସଂଗ୍ରାମରେ ଜଣେ ସକ୍ରିୟ କର୍ମୀ ଭାବରେ ଯୋଗ ଦେଇ କାରାବରଣ କରିଥିଲେ । ଶ୍ରୀମତୀ କାନୁନ୍‌ଗୋ ଜଣେ ସ୍ୱାଧୀନତାସଂଗ୍ରାମୀ ତଥା ରୁଚି ସମ୍ପନ୍ନା ସୁଗୃହିଣୀ ହୋଇଥିବାରୁ ବିନୋଦ କାନୁନ୍‌ଗୋ ଶେଷ ଜୀବନ ପର୍ଯ୍ୟନ୍ତ ସାହିତ୍ୟ କ୍ଷେତ୍ରରେ କଠିନ ସାଧନା କରିବାକୁ ସମର୍ଥ ହୋଇଥିଲେ ।

## ଯୁଦ୍ଧବେଳେ ଓଡ଼ିଶା ଉପକୂଳରେ ପ୍ରଚାର

ଯୁଦ୍ଧର ଅଗ୍ରଗତି ସଙ୍ଗେ ସଙ୍ଗେ ଦେଶର ରାଜନୈତିକ ପରିସ୍ଥିତିରେ ବୈପ୍ଳବିକ ପରିବର୍ତ୍ତନ ଦେଖା ଦେଲା । ଗାନ୍ଧିଜୀଙ୍କ ନେତୃତ୍ୱରେ କଂଗ୍ରେସ ଅନୁ୍ାନ ଯୁଦ୍ଧ ବିରୁଦ୍ଧରେ ପ୍ରଥମେ ବ୍ୟକ୍ତିଗତ ସତ୍ୟାଗ୍ରହ ବା 'ବାଣୀ ସତ୍ୟାଗ୍ରହ'' ଚଳେଇଲେ । ଯୁଦ୍ଧରେ ମିତ୍ର ପକ୍ଷ ବିରୁଦ୍ଧରେ ଜାପାନ ଯୁଦ୍ଧରେ ଯୋଗ ଦେବା ପରେ ଭାରତର ପୂର୍ବ ଉପକୂଳ ଜାପାନ ଆକ୍ରମଣର ସମ୍ମୁଖୀନ ହେଲା ଏବଂ ବ୍ରିଟିଶ ସରକାର ଓଡ଼ିଶା ଉପକୂଳରୁ ଡଙ୍ଗା ତଥା ଜିନିଷ ପତ୍ର ଘେନି ଆସିବାର ଯେଉଁ ଆୟୋଜନ କଲେ ସେଥିରେ ଲୋକେ ଅଧିକ ଆତଙ୍କିତ ହୋଇପଡ଼ିଲେ । ସେତେବେଳେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସାଧାରଣ ସଂପାଦକ ଜନନାୟକ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ କଂଗ୍ରେସ କର୍ମୀମାନେ ଦଳ ଦଳ ହୋଇ ଯାଇ ଉପକୂଳ ଅଞ୍ଚଳରେ ବ୍ରିଟିଶ ଯୁଦ୍ଧ ନୀତି ତଥା ଜାପାନ ଆକ୍ରମଣର ଆଶଙ୍କା ପ୍ରତି କଂଗ୍ରେସର ମତିଗତି ବୁଝାଉଥିଲେ । ଏଥିରୁ ଗୋଟିଏ ଦଳରେ ବିନୋଦ ବାବୁ ଯାଉଥିଲେ । ସେହି ସମୟରେ ''ଆମେ କେବେହେଲେ ଜାପାନ ସପକ୍ଷରେ ନୁହଁ'' ବୋଲି ଉପକୂଳ ଅଞ୍ଚଳରେ ଲୋକଙ୍କୁ ବୁଝାଇ ଦେବାପାଇଁ ମହାତ୍ମା ଗାନ୍ଧି ଶ୍ରୀମତୀ ମୀରାବେନ୍‌ଙ୍କୁ ଓଡ଼ିଶା ପଠାଇଥିଲେ । ତାଙ୍କ ନାମରେ ଆସୁଥିବା ଚିଠି ପତ୍ର ତାଙ୍କୁ ଆଣିଦେବା ଓ ତାଙ୍କଠାରୁ ଚିଠି ନେଇ ଅନ୍ୟତ୍ର ଦେବା କାର୍ଯ୍ୟରେ ମଧ୍ୟ ବିନୋଦ ବାବୁ ସାହାଯ୍ୟ କରୁଥିଲେ ।

## ତାଙ୍କ ଶେଷ ଜେଲ ଜୀବନ

୧୯୪୨ ଅଗଷ୍ଟ ୯ ତାରିଖ ଆସିଲା । ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ 'ଭାରତଛାଡ଼' ସଂଗ୍ରାମର ଦୁନ୍ଦୁଭି ନାଦ ସମଗ୍ର ଭାରତ ବାସୀଙ୍କ ଭିତରେ ଉତ୍ସାହ ଓ ଉନ୍ମାଦନା ସୃଷ୍ଟି କଲା । ସେତେବେଳେ ବିନୋଦ କାନୁନ୍‌ଗୋ ଓ ତାଙ୍କ ସହଧର୍ମିଣୀ ତାଙ୍କ ଗାଁ ମଲ୍ଲିପୁରଠାରେ ଥାଆନ୍ତି । ସେ ଜନନାୟକ ନବକୃଷ୍ଣ ଚୌଧୁରୀଙ୍କଠାରୁ ଖଣ୍ଡିଏ ଚିଠି ପାଇଲେ । ସେଥିରେ ଲେଖାଥିଲା ''ଗୋଟିଏ କାମ ଜେଲ ଯିବା ପୂର୍ବରୁ ଶୀଘ୍ର କରିଦେବୁ । ଲୋକଙ୍କୁ ଜଣାଇ ଦେବୁ ଯେ ଏଣିକି ସେମାନେ ନିଜର ନେତା ହୋଇ ଶେଷ ସ୍ୱାଧୀନତା ସଂଗ୍ରାମକୁ ସଫଳ କରିବାପାଇଁ ଯାହା ପାରିବେ କରିଯିବେ । ଅତ୍ୟାଚାରୀ ବ୍ରିଟିଶ ଶାସନର ବୃହତ୍ ପ୍ରତୀକକୁ ଧ୍ୱଂସ କରି ଦିଆଯାଉ । ଗୋଟିଏ ଲିଥୋ ମେସିନ ଯୋଗାଡ଼ କରି କେତେ ଲକ୍ଷ ପ୍ରଚାର ପତ୍ର ଛାପି ବାଣ୍ଟିବେ ।'' ସେ ସେଇଆ କଲେ । ଗୋଟିଏ ଲିଥୋ ମେସିନ ଯୋଗାଡ଼ କରି ତାଙ୍କ ସ୍ତ୍ରୀ ଓ ନବ ବାବୁଙ୍କଠାରୁ ଚିଠି ଘେନି ଆସିଥିବା ଦୁଇ ଜଣ ଯୁବକଙ୍କ ସାହାଯ୍ୟରେ ପ୍ରଚାର ପତ୍ର ଛାପିଲେ । ତା'ପରେ ଯୁଦ୍ଧ ବେଳର ସଂବାଦ ସଂଗ୍ରହ କରି ପଠାଇବାପାଇଁ 'ସମାଜ'ର ଭ୍ରାମ୍ୟମାଣ ସଂବାଦଦାତା ସାଜି ଓଡ଼ିଶାର ବିଭିନ୍ନ ସ୍ଥାନରେ ବୁଲି ସେସବୁ ବାଣ୍ଟି ଦେଲେ । ବିଶେଷ ଭାବରେ ସେ ବରୀ ଅଞ୍ଚଳର ତାଙ୍କ ପୁରୁଣା କର୍ମୀମାନଙ୍କ ସାହାଯ୍ୟ ନେଇଥିଲେ । ତେବେ ବିନୋଦ ବାବୁ ବେଶି ଦିନ ବାହାରେ ରହିପାରିଲେ ନାହିଁ । ସେ ୧୯୪୨ ମସିହା ଅଗଷ୍ଟ ୨୮ ତାରିଖ ଦିନ ଗିରଫ ହୋଇଥିଲେ ।

## ଜେଲ ହେଲା ବିଶ୍ୱବିଦ୍ୟାଳୟର ପ୍ରବେଶ ଦ୍ୱାର

୪୦୦ରୁ ଅଧିକ ରାଜନୈତିକ ଅଟକବନ୍ଦୀଙ୍କ ସହିତ ସେ ବ୍ରହ୍ମପୁର କେନ୍ଦ୍ର ଜେଲ୍‌ରେ ରହିଲେ । ଯୁଦ୍ଧର ଗତି କ୍ରମଶଃ ମିତ୍ରପକ୍ଷ ସପକ୍ଷରେ ଗଲା । ମିତ୍ର ପକ୍ଷ ବିଜୟଲାଭ କଲେ ବ୍ରିଟିଶ ସରକାର ସହଜରେ ଭାରତବାସୀଙ୍କୁ କ୍ଷମତା ହସ୍ତାନ୍ତର କରିବ ନାହିଁ ବୋଲି ଆଶଙ୍କା ହେଲା । ତେଣୁ ଦୀର୍ଘକାଳ ହୁଏତ ଜେଲ୍ ଭିତରେ ରହିବାକୁ ହୋଇପାରେ । ସେ ଜେଲ୍‌ଭିତରେ ନିୟମିତ ଭାବରେ ପଢ଼ାପଢ଼ି କରିବେ ଓ ବାହାରକୁ ଗଲେ କିଛି ଲେଖିବେ ବୋଲି ମନକଲେ । ପାଟନା କ୍ୟାମ୍ପ ଜେଲ୍‌ରେ, ବରୀ କର୍ମକ୍ଷେତ୍ରରେ ତଥା 'ସମାଜ' ଅଫିସରେ କାର୍ଯ୍ୟ କରୁଥିଲାବେଳେ ସେ ରାଜନୀତି, ଅର୍ଥନୀତି, କାବ୍ୟ କବିତା ଓ ଇତିହାସ କିଛି ଅଧ୍ୟୟନ କରିଥିଲେ । ତେଣୁ ସେ ସବୁ ଆଉ ଅଧ୍ୟୟନ ନ କରି ବିଜ୍ଞାନ ବିଷୟରେ କିଛି ଜାଣିବାପାଇଁ ସେ ସ୍ଥିର କଲେ । ସେ ତ ହାଇସ୍କୁଲର ଦଶମ ଶ୍ରେଣୀରୁ ପଢ଼ା ଛାଡ଼ିଥିଲେ । ସେତେବେଳେ ମଧ୍ୟ ହାଇସ୍କୁଲ ସ୍ତରରେ କୌଣସି ବିଜ୍ଞାନ ପାଠ୍ୟ ପୁସ୍ତକ ନ ଥିଲା । କେବଳ

କଲେଜମାନଙ୍କରେ ବିଜ୍ଞାନ ପଢ଼ା ହେଉଥିଲା । ତେଣୁ ବ୍ରହ୍ମପୁର ଜେଲ୍ ହେଲା ତାଙ୍କପାଇଁ ବିଶ୍ୱବିଦ୍ୟାଳୟର ପ୍ରବେଶ ଦ୍ୱାର । ସେ ସେଠାରେ ବିଜ୍ଞାନ ଅଧ୍ୟୟନ ଆରମ୍ଭ କଲେ ।

## ଚିକିତ୍ସାଶାସ୍ତ୍ର ସଂବନ୍ଧରେ ବିଧିବଦ୍ଧ ଅଧ୍ୟୟନ

ବ୍ରହ୍ମପୁର ଜେଲ ଭିତରେ ରାଜବନ୍ଦୀମାନଙ୍କ ଭିତରେ ଡାଃ ଘନଶ୍ୟାମ ମହାନ୍ତି, ଡାଃ ବ୍ରଜନାଥ ମିଶ୍ର, ଡାଃ ଘନଶ୍ୟାମ ପାଣିଗ୍ରାହୀ, ଡାଃ ରବି ଘୋଷ ଓ ଡାଃ ମୋତିଲାଲ ତ୍ରିପାଠୀ ପ୍ରମୁଖ ଅଭିଜ୍ଞ ଓ ବିଜ୍ଞ ଡାକ୍ତରମାନେ ଥିଲେ । ବିନୋଦ ବାବୁ ଜେଲ ଡାକ୍ତରଙ୍କଠାରୁ ପ୍ରଥମେ କେତେ ଖଣ୍ଡି ଶରୀର ତତ୍ତ୍ୱ ଓ ଚିକିତ୍ସାଶାସ୍ତ୍ର ସଂବନ୍ଧୀୟ ପୁସ୍ତକ ଯୋଗାଡ଼ କଲେ ଓ ଆଉ କେତେଖଣ୍ଡି ଚିକିତ୍ସାଶାସ୍ତ୍ର ବହି ବାହାରୁ ଯୋଗାଡ଼ କରି ଡାକ୍ତରୀବିଦ୍ୟା ଅଧ୍ୟୟନ ଆରମ୍ଭ କରିଥିଲେ । ତାଙ୍କ ଦେଖା ଦେଖି ଆଉ କେତେଜଣ ରାଜବନ୍ଦୀ ଚିକିତ୍ସାଶାସ୍ତ୍ର ଅଧ୍ୟୟନ କରିବାପାଇଁ ଆଗ୍ରହ ପ୍ରକାଶ କଲେ । କ୍ରମଶଃ ଏହିଭଳି ଆଗ୍ରହୀ ବନ୍ଦୀଙ୍କ ସଂଖ୍ୟା ୧୫ ହୋଇଗଲା । ତେଣୁ ସେମାନେ ରୀତିମତ କ୍ଲାସକରି ଡାକ୍ତରୀ ଶାସ୍ତ୍ର ଶିକ୍ଷା କଲେ । ଏହି କାର୍ଯ୍ୟରେ ଅଟକବନ୍ଦୀ ସୁଧୀର ଘୋଷ ବିଶେଷ ଭାବରେ ସାହାଯ୍ୟ କରିଥିଲେ । ସୁଧୀର ଘୋଷ ମେଡିକାଲ କଲେଜରେ ଅଧ୍ୟୟନ କରୁଥିଲାବେଳେ ପଢ଼ା ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ପରେ ସେ ତାଙ୍କର ଆତ୍ମୀୟ ବିଶିଷ୍ଟ ଚିକିତ୍ସକଙ୍କ ନିକଟରେ ରହି ଚିକିତ୍ସାଶାସ୍ତ୍ର ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ସେ ଜେଲଖାନାରେ ଥିଲାବେଳେ ଜେଲ ଡାକ୍ତରଖାନା ଦାୟିତ୍ୱରେ ରହୁଥିଲେ ।

ଜେଲ ଭିତରେ ଶରୀରତତ୍ତ୍ୱ ସଂବନ୍ଧରେ ବିନୋଦ ବାବୁ ତଥା ତାଙ୍କ ସହବନ୍ଦୀମାନେ ତାତ୍ତ୍ୱିକ ଶିକ୍ଷା ଲାଭ କଲେ ମଧ୍ୟ ବାସ୍ତବ ଶିକ୍ଷାଲାଭପାଇଁ ସୁବିଧା ନ ଥିଲା । ମାତ୍ର ତାଙ୍କ ଅନୁରୋଧକ୍ରମେ ଜେଲ କର୍ତ୍ତୃପକ୍ଷ ଗୋଟିଏ ଛେଳିକୁ ହାଣିଦେଇ ସେମାନଙ୍କୁ ଦେଇଥିଲେ ଓ ସେମାନେ ସେହି ଛେଳିର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗକୁ କାଟି ଦେଖି ସେ ସଂବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ହାସଲ କଲେ । ଶରୀରତତ୍ତ୍ୱ ଓ ଚିକିତ୍ସାଶାସ୍ତ୍ର ସଂବନ୍ଧରେ ଜ୍ଞାନଲାଭ କରିବା ସଙ୍ଗେ ସଙ୍ଗେ ସେ ରସାୟନ ଶାସ୍ତ୍ର ଓ ପଦାର୍ଥ ବିଜ୍ଞାନ ସଂବନ୍ଧରେ ମଧ୍ୟ ପ୍ରାଥମିକ ଜ୍ଞାନ ହାସଲ କରିଥିଲେ । ସହବନ୍ଦୀ ଡାଃ ବ୍ରଜନାଥ ମିଶ୍ର ଓ ଡାଃ ଘନଶ୍ୟାମ ପାଣିଗ୍ରାହୀଙ୍କଠାରୁ କବିରାଜି ଶାସ୍ତ୍ର ମଧ ଶିକ୍ଷା କରିଥିଲେ । ସେଠାରେ ସେ ଉପଲବ୍ଧି କରିଥିଲେ ଯେ ଯେଉଁମାନେ ଗାଁ ଗହଳରେ ରାଜନୈତିକ ବା ସାମାଜିକ କାମ କରିବେ ସେମାନେ ବିଭିନ୍ନ ରୋଗପାଇଁ ଚେର, ମୂଳ, ବଟିକା ଓ ମଲମ ଔଷଧ ରୂପେ ବ୍ୟବହାର କରି ଶିଖିବା ଏକାନ୍ତ ଆବଶ୍ୟକ । ସେ ୧୯୪୨ ମସିହାଠାରୁ ୧୯୪୪ ମସିହା ପର୍ଯ୍ୟନ୍ତ ଜେଲ ଭିତରେ ଥିବା ସମୟରେ କିଛି ନା କିଛି ବିଜ୍ଞାନ ଓ ଚିକିତ୍ସା ଶାସ୍ତ୍ର ପ୍ରତିଦିନ ଅଧ୍ୟୟନ କରିବା ଅଭ୍ୟାସ କରିଥିଲେ ।

ବ୍ରହ୍ମପୁର ଜେଲ ଭିତରେ ଶରୀର ତତ୍ତ୍ୱ ଓ ଚିକିତ୍ସା ଶାସ୍ତ୍ର ସଂବନ୍ଧରେ ଅଧ୍ୟୟନ କଲାବେଳେ ସେ ବିଖ୍ୟାତ ବୈଜ୍ଞାନିକ ଗାନ୍ଧିବାଦୀ ସତୀଶ ଦାସଗୁପ୍ତଙ୍କ ପ୍ରଣୀତ "ଭିଲେଜ ଆଣ୍ଡ ହୋମ ଡକ୍ଟର" ପୁସ୍ତକଟି ଅଧ୍ୟୟନ କରି ବିଶେଷ ଉପକୃତ ହୋଇଥିଲେ। ସତୀଶ ବାବୁ ନିଜେ ଜଣେ ଡାକ୍ତର ନ ଥିଲେ। ସେ ଥିଲେ ଜଣେ ବିଶିଷ୍ଟ ବୈଜ୍ଞାନିକ। ମହାତ୍ମା ଗାନ୍ଧିଙ୍କ ପରାମର୍ଶକ୍ରମେ ସେ ଏହି ପୁସ୍ତକଟି ପ୍ରଣୟନ କରିଥିଲେ। ତା ପୂର୍ବରୁ ସେ ବହୁ ଚିକିତ୍ସାଶାସ୍ତ୍ର ଅଧ୍ୟୟନ କରିଥିଲେ ଓ ନିଜେ ଡାକ୍ତରଖାନାକୁ ଯାଇ ବିଭିନ୍ନ ରୋଗପାଇଁ ପ୍ରେସ୍କ୍ରିପ୍ସନ୍ କାର୍ଡ଼ମାନ ଦେଖିସାରିବା ପରେ ଉକ୍ତ ପୁସ୍ତକଟି ଲେଖିଲେ। ମହାତ୍ମା ଗାନ୍ଧି ଏହି ପୁସ୍ତକଟିର ମୁଖବନ୍ଧରେ ଲେଖିଛନ୍ତି ଯେ ଇଂରାଜୀ ଜାଣିଥିବା ପ୍ରତ୍ୟେକ ବ୍ୟକ୍ତି ଏହି ପୁସ୍ତକଟି ପଢ଼ିବା ଏକାନ୍ତ ଆବଶ୍ୟକ। ବିନୋଦ ବାବୁ ନିଜେ ଡାକ୍ତରୀଶାସ୍ତ୍ର ପଢ଼ିଲାବେଳେ କେଉଁ ରୋଗ ପାଇଁ କିପରି ଔଷଧ ବ୍ୟବହାର କରାଯିବ ତାହା ପଚାରି ବୁଝୁଥିଲେ ଓ ଜେଲ ଡାକ୍ତରଖାନାକୁ ଯାଇ ଦେଖୁଥିଲେ। ସେ ବାହାରକୁ ଆସିବାପରେ ଚିକିତ୍ସା ଓ ଶରୀର ତତ୍ତ୍ୱ ବିଷୟରେ ବହୁ ପ୍ରବନ୍ଧ ସଂବାଦ ପତ୍ରରେ ଲେଖିଥିଲେ ଓ ସେ ସଂବନ୍ଧରେ ପିଲାଙ୍କପାଇଁ ପୁସ୍ତକମାନ ଲେଖିଥିଲେ। ମାତ୍ର ସେ ନିଜେ ରୋଗପାଇଁ ଔଷଧ ଜାଣିଲେ ମଧ୍ୟ କାହାରିକୁ କୌଣସି ରୋଗ ଚିକିତ୍ସାପାଇଁ ପରାମର୍ଶ ଦେଉ ନ ଥିଲେ। ତାଙ୍କ ମତରେ ସାଧାରଣ ଲୋକେ ଚିକିତ୍ସାଶାସ୍ତ୍ର ବିଷୟରେ ଯେତେ ଜାଣିଲେ ମଧ୍ୟ ରୋଗଚିକିତ୍ସା କରିବା ଉଚିତ ନୁହେଁ। କାରଣ ମନୁଷ୍ୟ ଶରୀର ଅତି ଜଟିଳ ଓ ସୂକ୍ଷ୍ମ। ସେ ବିଷୟରେ ସଠିକ ଧାରଣା କରିବା ମନୁଷ୍ୟ ଶକ୍ତିର ବାହାରେ। ତାଙ୍କ ନିଜର ରୋଗ ହେଲେ ସେ ଡାକ୍ତରଙ୍କ ପରାମର୍ଶ ନେଉଥିଲେ।

## ସ୍ୱାଧୀନତା ସଂଗ୍ରାମୀଙ୍କଠାରୁ ତଥ୍ୟ ସଂଗ୍ରହ

ବ୍ରହ୍ମପୁର ଜେଲ ଭିତରେ ଥିଲାବେଳେ ବିନୋଦ ବାବୁ ଚିକିତ୍ସାଶାସ୍ତ୍ର ତଥା ବିଜ୍ଞାନର ଅନ୍ୟାନ୍ୟ ବିଭାଗ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ରାଜବନ୍ଦୀମାନଙ୍କ ଭିତରୁ ୩୦୦ ରାଜବନ୍ଦୀଙ୍କ ଜୀବନୀ ତଥା ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କ ଅବଦାନ ସଂବନ୍ଧୀୟ ତଥ୍ୟ ସଂଗ୍ରହ କରିଥିଲେ। ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଇତିହାସ ସଂଗ୍ରହ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ। ପରବର୍ତ୍ତୀ ସମୟରେ ସେ ଯେତେବେଳେ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଇତିହାସର ବିଭିନ୍ନ ପର୍ଯ୍ୟାୟ ଲେଖିଲେ ତଥା 'ଜ୍ଞାନମଣ୍ଡଳ'ର ବିଭିନ୍ନ ସ୍ଥାନରେ ସ୍ୱାଧୀନତା ସଂଗ୍ରାମ ଓ ସଂଗ୍ରାମୀଙ୍କ ବିଷୟରେ ଲେଖିଲେ, ଜେଲରେ ଲିପିବଦ୍ଧ ଏହି ସବୁ ତଥ୍ୟ ସେଥିପାଇଁ ବିଶେଷ ଉପଯୋଗୀ ପ୍ରମାଣିତ ହେଲା।

## ସମଗ୍ର ଗ୍ରାମସେବକ

୧୯୪୪ ମସିହା ଜୁଲାଇ ମାସରେ ବିନୋଦ କାନୁନ୍‌ଗୋ ବ୍ରହ୍ମପୁର ଜେଲରୁ ଖଲାସ ହୋଇ ଆସିଲେ। ବ୍ରିଟିଶ ସରକାର ଯୁଦ୍ଧରେ ବିଜୟୀ ହୋଇଥିବାରୁ ଭାରତକୁ ସହଜରେ ସ୍ୱାଧୀନତା ଦେବେ ନାହିଁ ବୋଲି ବହୁ କଂଗ୍ରେସ କର୍ମୀ ଆଶଙ୍କା କଲେ। ମାତ୍ର ମହାତ୍ମା ଗାନ୍ଧି ମତ ପ୍ରକାଶ କଲେ ଯେ ବ୍ରିଟିଶ୍ ସରକାର ଯୁଦ୍ଧରେ ବିଜୟୀ ହୋଇଥିଲେ ମଧ୍ୟ ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼ିଛନ୍ତି। ଭାରତକୁ ନିଜ ଶାସନାଧୀନ କରି ରଖିବାକୁ ହେଲେ ତାଙ୍କୁ ବହୁ ସୈନ୍ୟ ଏଠାକୁ ଆଣିବାକୁ ହେବ। ତାହା ସେମାନେ ଚାହିଁବେ ନାହିଁ। ସେମାନେ ବରଂ ଭଲରେ ଭାରତ ଛାଡ଼ି ଚାଲିଯିବାକୁ ଚାହିଁବେ। ତେଣୁ ସ୍ୱାଧୀନ ଭାରତକୁ କେମିତି ଗଢ଼ିବାକୁ ହେବ ତାହା ହିଁ ଆମର ଚିନ୍ତାର ବିଷୟ ହେବା ଉଚିତ। ଗାନ୍ଧିଜୀ ଚାହିଁଲେ ଯେ ଜଣେ ଜଣେ କର୍ମୀ ଗୋଟିଏ ଗୋଟିଏ ଅଞ୍ଚଳର ଦାୟିତ୍ୱ ନେଇ ରହିବେ। ସେହି ଅଞ୍ଚଳରେ ସେ ସମସ୍ତ ରଚନାତ୍ମକ କାର୍ଯ୍ୟ କରିବେ। ତା ଛଡ଼ା ସେହି ଅଞ୍ଚଳରେ ପୁଲିସ ବା ଜମିଦାର ଯଦି କିଛି ଜୁଲମ ବା ଅତ୍ୟାଚାର କରନ୍ତି ତା'ହେଲେ ସେହି କର୍ମୀମାନେ ଲୋକଙ୍କୁ ସାହସ ଦେବେ। ସେମାନଙ୍କୁ କୁହାଗଲା ସମଗ୍ର ଗ୍ରାମସେବକ। ଭାରତର ଯେଉଁ ୧୦୦ ଜଣ ଏହିପରି ଗ୍ରାମସେବକଙ୍କୁ ମହାତ୍ମା ଗାନ୍ଧି ବାଛିଲେ, ସେମାନଙ୍କ ଭିତରୁ ଜଣେ ଥିଲେ ବିନୋଦ କାନୁନ୍‌ଗୋ। ସେ ତାଙ୍କ ନିଜ ଗାଁକୁ କେନ୍ଦ୍ରକରି ସେହି ଅଞ୍ଚଳରେ ସମଗ୍ର ଗ୍ରାମସେବକ ଭାବରେ କାର୍ଯ୍ୟ କଲେ। ଗ୍ରାମସେବକ ଭାବରେ କାର୍ଯ୍ୟ କରୁଥିବା ବେଳେ ୩୦ଟି ମକଦ୍ଦମାରେ ସେ ଚାଷୀଙ୍କ ପକ୍ଷଭୁକ୍ତ ହୋଇଥିଲେ।

## ଶୋବି ବାଉରାଣୀ ଓ ପାଲୁଣିମା

ବିନୋଦ କାନୁନ୍‌ଗୋ ଜଣେ ରଚନାତ୍ମକ କର୍ମୀ ଭାବରେ ତାଙ୍କ କର୍ମମୟ ଜୀବନ ଆରମ୍ଭ କଲାବେଳେ ବରୀ ଅଞ୍ଚଳରେ ଜଣେ ହରିଜନଙ୍କ ଘରେ ରହିଥିଲେ। ତାଙ୍କରି ଘରେ ସେ ଖାଉଥିଲେ। ତେଣୁ ହରିଜନମାନଙ୍କର ତାଙ୍କ ଉପରେ ବିଶ୍ୱାସ ଆସିଥିଲା। ତା ପୂର୍ବରୁ ଗାଁର ସବର୍ଣ୍ଣମାନେ ହରିଜନଙ୍କଠାରୁ ତାଙ୍କ ଗାଈ ଦୁଧ କିଣୁ ନ ଥିଲେ। ସେ ସେଠାରେ ରହିବାପରେ ଓ ତାଙ୍କଠାରୁ ଦୁଧ କିଣିବା ପରେ ଅନ୍ୟ ଗ୍ରାମବାସୀମାନେ ସେମାନଙ୍କଠାରୁ ଦୁଧ କିଣିଲେ। ତା'ପରେ ସେ ଓଡ଼ିଶା ହରିଜନ ସେବକ ସଂଘର ଜଣେ କର୍ମୀ ଭାବରେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ହରିଜନଙ୍କ ଅବସ୍ଥାର ଉନ୍ନତିପାଇଁ କାମ କଲେ। ଶେଷରେ ମହାତ୍ମା ଗାନ୍ଧିଙ୍କ ଦ୍ୱାରା ମନୋନୀତ ଜଣେ ସମଗ୍ର ଗ୍ରାମସେବକ ଭାବରେ ତାଙ୍କ ଗାଁରେ ହରିଜନ ମୁଳିଆଙ୍କ ସାଙ୍ଗରେ ତାଙ୍କ ଜମିରେ ଏକାଠି ଚାଷ କାମ କଲେ। ଏହିପରି ରଚନାତ୍ମକ କର୍ମୀ ଭାବରେ କାର୍ଯ୍ୟ କଲାବେଳେ ଅସ୍ପୃଶ୍ୟତା ନିବାରଣ ଥିଲା ତାଙ୍କପାଇଁ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ।

ତାଙ୍କ ଗାଁ ମଲ୍ଲିପୁର ହରିଜନ ସାହିର ଶୋବି ବାଉରାଣୀ ସହିତ ପିଲାଦିନୁ ତାଙ୍କର ଘନିଷ୍ଠତା ଥିଲା। ସେ ଜନ୍ମ ହେଲାବେଳେ ଶୋବି ତାଙ୍କ ଏନ୍ତୁଡ଼ିଶାଳରେ ରହି କାମ କରିଥିଲା ଏବଂ ଦି ମାସ ପର୍ଯ୍ୟନ୍ତ ତାଙ୍କୁ ସେକିବାକୁ ଆସିଥିଲା। ତା' ପରଠୁ ସେ ବେଳେବେଳେ ତାଙ୍କ ଘରକୁ ଆସି ପିଠାପଣା ନିଏ। ବିନୋଦ ବାବୁ ଯେତେବେଳେ ଗାଁକୁ ଯାଆନ୍ତି ତା ଘରକୁ ଯାଆନ୍ତି ଓ ତା'ପାଇଁ ଯାହା ନେଇ ଥାଆନ୍ତି ଦେଇ ଆସନ୍ତି। ସେ ଯେତେବେଳେ ଗୁରୁତର ଅସୁସ୍ଥ ହୋଇ ଶଯ୍ୟାଶାୟୀ ହୋଇପଡ଼ିଲା ବିନୋଦ ବାବୁ ଗାଁକୁ ଯାଇ ତାକୁ ଆଉଁଷି ଦେଇ ତା ଘରେ କହିଆସିଥିଲେ ଯେ ତା'ର କିଛି ହେଲେ ମତେ ଖବର ଦବ। ସେ ମୋ କାନ୍ଧରେ ଯିବ। ମାତ୍ର ତା ହୋଇ ପାରିଲା ନାହିଁ।

ବିନୋଦ ବାବୁ ତାଙ୍କ ମାମୁଁଘର ନାଗଣପୁର ଗାଁରେ ରହି ପଢୁଥିବାବେଳେ ଗାଁ କଣ୍ଡରା ସାହିର ପାଲୁଣିମା ସହିତ ତାଙ୍କର ଘନିଷ୍ଠ ପରିଚୟ ହୋଇଥିଲା। ପାଲୁଣିମା'ର ଗୋଟିଏ ଭଲ ବରକୋଳି ଗଛ ଥିଲା। ସେଥିରେ ବଡ଼ ବଡ଼ ବରକୋଳି ଫଳେ। ବରକୋଳି ଗଛମୂଳେ କଣ୍ଡରାଙ୍କ ଅଇଁଠା ପଡୁଥିବ ବୋଲି ଘୃଣା କରି ପିଲାମାନେ ସେଠାକୁ ବରକୋଳି ଖାଇବାକୁ ଯାଆନ୍ତି ନାହିଁ। ପାଲୁଣିମା ଏହା ଜାଣିପାରି ବରକୋଳି ଗଛମୂଳ ସଫାକରି ଲିପାପୋଛା କରିଦେଲା ଏବଂ ତା'ପରେ ପିଲାମାନେ ସେଠିକି ଯାଇ ବରକୋଳି ଗୋଟେଇ ଖାଇଲେ। ପିଲାମାନଙ୍କ ପ୍ରତି ତାର ଏତେ ମମତା ଅଥଚ ସେ ସାରା ଜୀବନ ଅଛୁଆଁ ହୋଇ ରହିଲା ଓ ଅତ୍ୟନ୍ତ ଦାରିଦ୍ର୍ୟ ଭିତରେ ଚଳିଲା। ତାର ଶୋଚନୀୟ ଦାରିଦ୍ର୍ୟର ଏକ ନାଟକୀୟ ଦୃଶ୍ୟ ସେ ତାଙ୍କ ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି। ପାଲୁଣିମା'ର ଖାଇବାପାଇଁ ବାସନ ନ ଥିଲା। ସେ ଘର ମଝିରେ ଗୋଟିଏ ଗାତ ଖୋଳି ଦେଇଥାଏ। ଖାଇଲାବେଳେ ସେଇ ଗାତ ଭିତରେ ଖଣ୍ଡିଏ କଦଳୀ ପତ୍ର ପୂରେଇଦିଏ ଓ ତା ଭିତରେ ଭାତ ଓ ତୋରାଣି ଢ଼ାଳି ଦିଏ। ସେଥିରୁ ଆଗ ଭାତ ଛାଣି ଖାଇଦେଲା ପରେ ମୁହଁ ଲଗେଇ ତୋରାଣିତକ ପିଇଦିଏ। ତାଙ୍କ ଦେଖନ୍ତେ ପାଲୁଣିମାର ଏହି ଅବସ୍ଥାର ଉନ୍ନତି ହୋଇପାରିଲା ନାହିଁ। ଗାଁକୁ ଗଲାବେଳେ ସେ ପାଲୁଣିମା'କୁ ଦେଖିବାପାଇଁ ମାମୁଁ ଘରକୁ ଯାଆନ୍ତି। ଏଠାରେ ବିନୋଦ ବାବୁ ଭଗବାନଙ୍କର ବିଚିତ୍ର ଲୀଳା ଦେଖିଛନ୍ତି। ଏକ ପକ୍ଷରେ ମନୁଷ୍ୟ ପ୍ରତି ମନୁଷ୍ୟର ଅପମାନ ଓ ଘୃଣା, ଅନ୍ୟ ପକ୍ଷରେ ଏପରି ଯେଉଁମାନେ କରୁଛନ୍ତି ତାଙ୍କ ପିଲାଙ୍କ ପ୍ରତି ପାଲୁଣିମା'ର ଅସରନ୍ତି ସ୍ନେହ ଓ ଆଦର।

## ଗାନ୍ଧିଜୀଙ୍କ ଗଢ଼ା ମଣିଷ

ସମଗ୍ର ଗ୍ରାମସେବକ ଭାବରେ କାମ କରୁଥିବାବେଳେ ସମସ୍ତ ଭାରତବାସୀଙ୍କ ପାଇଁ ତଥା ତାଙ୍କପାଇଁ ସର୍ବାପେକ୍ଷା ମର୍ମନ୍ତୁଦ ଘଟଣା ଘଟିଲା- ୧୯୪୮ ଜାନୁଆରୀ ମାସ ୩୧ ତାରିଖରେ ଜାତିର ପିତା ମହାତ୍ମା ଗାନ୍ଧିଙ୍କ ଶୋଚନୀୟ ହତ୍ୟା। ଭାରତ

ସ୍ୱାଧୀନ ହେବାପରେ ଗାନ୍ଧିଜୀ ମୋଟେ ପାଞ୍ଚ ମାସ ପନ୍ଦରଦିନ ବଞ୍ଚିଥିଲେ। ବଞ୍ଚିଥିବାବେଳେ ଗାନ୍ଧିଜୀ ଅନୁଭବ କରିଥିଲେ ଯେ ଦେଶର ମୌଳିକ ସମସ୍ୟା ସଂପର୍କରେ ନେତାମାନେ ତାଙ୍କର ପରାମର୍ଶ ନେଉ ନାହାନ୍ତି। ତେଣୁ ତାଙ୍କ ମୃତ୍ୟୁପରେ କଅଣ ହେବ ତାହା ବିନୋଦ ବାବୁଙ୍କ ଭଳି ଏକନିଷ୍ଠ କର୍ମୀମାନଙ୍କର ଚିନ୍ତାର ବିଷୟ ହୋଇଥିଲା। ସେତେବେଳକୁ ଜଣେ ସମଗ୍ର ଗ୍ରାମସେବକ ଭାବରେ କାର୍ଯ୍ୟ କରି ତାଙ୍କର ଯେଉଁ ସବୁ ଅନୁଭୂତି ହୋଇଥିଲା ତାହା ସେ ବିଭିନ୍ନ ସ୍ଥାନରେ ନିଜେ ବର୍ଣ୍ଣନା କରିଛନ୍ତି। ଏହି ସମୟରେ ଲୋକଙ୍କ ସାଙ୍ଗରେ ଘନିଷ୍ଠ ଭାବରେ ମିଶି କାମ କରିବା ଓ କଥାବାର୍ତ୍ତା କରିବା ଫଳରେ ଲୋକଚରିତ୍ର ଅଧ୍ୟୟନ କରିବାର ସୁଯୋଗ ସେ ପାଇଥିଲେ। ବହୁ ଜଟିଳ ସମସ୍ୟାର ସମ୍ମୁଖୀନ ହୋଇ ତା'ର ସମାଧାନ କରିବା ଫଳରେ ତାଙ୍କର ନିଜ ସାମର୍ଥ୍ୟ ଉପରେ ବିଶ୍ୱାସ ଆସିଯାଇଥିଲା ଏବଂ ଆତ୍ମବିଶ୍ୱାସ ସେ ଦୃଢ଼ ହୋଇଥିଲା।

ମହାତ୍ମା ଗାନ୍ଧିଙ୍କ ସାନିଧ୍ୟ ଲାଭ କରିବା ତଥା ତାଙ୍କ ପ୍ରଣୀତ ସାହିତ୍ୟ ତନ୍ନ ତନ୍ନ କରି ଅଧ୍ୟୟନ କରିବା ଫଳରେ ତାଙ୍କର ବ୍ୟକ୍ତିତ୍ୱ ଓ ସାହିତ୍ୟ ସାଧନା ଯେପରି ବିକାଶ ଲାଭ କରିଥିଲା ତାହା ବିନୋଦ ବାବୁ ଅନେକ ସ୍ଥାନରେ ବିସ୍ତୃତ ଭାବରେ ଉଲ୍ଲେଖ କରିଛନ୍ତି। ସେ ଲେଖିଛନ୍ତି- ''ମୁଁ ମହାତ୍ମା ଗାନ୍ଧିଙ୍କ ପାଖରେ ଋଣୀ। କାଦୁଅରେ ମୂର୍ତ୍ତି ଗଢ଼ି ତା ଭିତରେ ଜୀବନମନ୍ତ୍ର ଫୁଙ୍କି ଦେଇ ସେ କେମିତି ମଣିଷ ଗଢ଼ି ଦେଇ ପାରୁଥିଲେ ତା'ର ପ୍ରତ୍ୟକ୍ଷ ଅନୁଭୂତି ଏହି ନଅ ବର୍ଷ ଭିତରେ ହେଲା। ମୁଁ କେବେହେଲେ କହୁ ନାହିଁ ଯେ ଜଣେ ବଡ଼ ମଣିଷ ହେବାର ଯୋଗ୍ୟତା ଗାନ୍ଧିଜୀ ମତେ ଦେଇଛନ୍ତି। କିନ୍ତୁ କେବଳ ଜଣେ ମଣିଷ ହେବାର ସର୍ବନିମ୍ନ ଯୋଗ୍ୟତା ଗାନ୍ଧିଜୀ ମତେ ଦେଇଛନ୍ତି। ପ୍ରତ୍ୟକ୍ଷରେ ନ ହେଉ ପରୋକ୍ଷ ଭାବରେ। ସେହି ପାଶ୍ଚାତ୍ୟ ଦାର୍ଶନିକଙ୍କ ମତରେ ମୁଁ ସଂପୂର୍ଣ୍ଣ ଏକମତ ଯେ ବଡ଼ ମଣିଷ ହେଲି କି ନାହିଁ ସେଇଟା ବଡ଼ କଥା ନୁହେଁ। କେବଳ ମଣିଷ ପଦବାଚ୍ୟ ହୋଇପାରିଲେ ଯଥେଷ୍ଟ ହେଲା। ଗାନ୍ଧିଜୀଙ୍କ ଆଶୀର୍ବାଦ ବିନା ମୁଁ ଜଣେ ସାଧାରଣ ମନୁଷ୍ୟ ମଧ୍ୟ ହୋଇ ପାରି ନ ଥାନ୍ତି।

ବିନୋଦ ବାବୁ ଲେଖିଛନ୍ତି ଯେ ଗାନ୍ଧିଜୀଙ୍କ ପ୍ରଣୀତ ସାହିତ୍ୟର ପୃଷ୍ଠଭୂମିରେ ସେ ତାଙ୍କ ସାହିତ୍ୟିକ ଜୀବନ ପରିପୁଷ୍ଟ କରିଥିଲେ। ଗାନ୍ଧିଜୀ ତାଙ୍କ ଜୀବନକାଳ ଭିତରେ ଅଳିଆରୁ କମ୍ପୋଷ୍ଟ ତିଆରିଠାରୁ ଆରମ୍ଭ କରି ଜନ୍ମ ନିୟନ୍ତ୍ରଣ, ପ୍ରାକୃତିକ ଚିକିତ୍ସା, ଟ୍ରଷ୍ଟିସିପ୍ ସହିତ କମ୍ୟୁନିଜମ୍‌ର ତୁଳନା ପର୍ଯ୍ୟନ୍ତ ସବୁ ବିଷୟରେ ଲେଖିଛନ୍ତି। ସେହି ଲେଖାଗୁଡ଼ିକୁ ଆଧାର କରି ତାଙ୍କ ସାହିତ୍ୟିକ ଜୀବନର ମୂଳଦୁଆ ଗଢ଼ା ହୋଇଥିଲା। ଗାନ୍ଧିଜୀଙ୍କ ଯୋଗୁ ସେ ଜାଣିଲେ ଯେ ଧର୍ମ ଓ ବିଜ୍ଞାନ ପରସ୍ପର ବିରୋଧୀ ନୁହେଁ। ଆଧ୍ୟାତ୍ମିକ ଓ ବିଜ୍ଞାନର ଚମତ୍କାର ମିଶ୍ରଣ ଘଟିଛି। ଗାନ୍ଧିଜୀଙ୍କ ସାହିତ୍ୟ ତାଙ୍କୁ ଜନସାଧାରଣଙ୍କପାଇଁ ସୁଖପାଠ୍ୟ ସାହିତ୍ୟ ରଚନା କ୍ଷେତ୍ରରେ ପ୍ରେରଣା ଦେଇଥିଲା। ଗାନ୍ଧିଜୀଙ୍କ ପ୍ରେରଣାରେ ସେ ସମଗ୍ର ଗ୍ରାମସେବକ ଭାବରେ କାର୍ଯ୍ୟ

କଲାବେଳେ ଅନୁଭବ କରିଥିଲେ ଯେ କାମ ଭିତରେ ଆନନ୍ଦ ଓ ସନ୍ତୋଷ ଭରି ରହିଥାଏ। ସେହି ସମୟରେ ସେ ଜଣେ ମୂଲିଆଭଳି ଅନ୍ୟ ମୂଲିଆଙ୍କ ସାଙ୍ଗରେ କାମ କରି, ଚାଷ କାମ, ବଗିଚା କାମ ଓ ଗୋପାଳନ କରି ଗୋଟିଏ କାମକୁ ନିଖୁଣ ଭାବରେ କରିବାର ଯୋଗ୍ୟତା ହାସଲ କରିଥିଲେ। ସେହି ଯୋଗ୍ୟତା ଓ ସେହି ସାମର୍ଥ୍ୟ ତାଙ୍କୁ ପରବର୍ତ୍ତୀ ତିରିଶ ବର୍ଷ କାଳର ସାହିତ୍ୟ ସାଧନାରେ ବିଶେଷ ଭାବରେ ସହାୟକ ହୋଇଥିଲା।

## ପ୍ରଥମ ସାଧାରଣ ନିର୍ବାଚନରେ ପ୍ରାର୍ଥୀ

ବିନୋଦ କାନୁନ୍‌ଗୋ ୧୯୫୧-୫୨ ମସିହା ପ୍ରଥମ ସାଧାରଣ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ। ସେ କଟକ ଜିଲାର କିଶନନଗର ନିର୍ବାଚନ ମଣ୍ଡଳିରୁ ସୋସାଲିଷ୍ଟ ଦଳର ପ୍ରାର୍ଥୀ ହୋଇଥିଲେ। ତାଙ୍କ ବିରୁଦ୍ଧରେ କଂଗ୍ରେସ ଦଳର ପ୍ରାର୍ଥୀ ଥିଲେ ବିଶିଷ୍ଟ କଂଗ୍ରେସ ନେତା ରାଜକୃଷ୍ଣ ବୋଷ। ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ରାଜକୃଷ୍ଣ ବୋଷ ବିଜୟୀ ହେଲେ। ବିନୋଦ ବାବୁ ପରାଜିତ ହୋଇଥିଲେ। ସେତେବେଳେ ରାଜକୃଷ୍ଣ ବୋଷ ବିଜୟୀ ହେବାରେ ଆଶ୍ଚର୍ଯ୍ୟ ହେବାର କିଛି ନ ଥିଲା। ରାଜକୃଷ୍ଣ ବାବୁ ସ୍ୱାଧୀନତା ସଂଗ୍ରାମର ପ୍ରଥମ ପର୍ଯ୍ୟାୟରେ ପ୍ରଥମ ସତ୍ୟାଗ୍ରହୀ ଥିଲେ। ସେ ମେଡିକାଲ ସ୍କୁଲର ଛାତ୍ର ଥିଲାବେଳେ ପଢ଼ାଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ। ସେ ଜଣେ ବିଚକ୍ଷଣ ବାଗ୍ମୀ ଭାବରେ ସମଗ୍ର ଓଡ଼ିଶାରେ ସୁପରିଚିତ ଥିଲେ। କିଶନନଗର ନିର୍ବାଚନ ମଣ୍ଡଳିରେ ସୁକ ପାଇକା କେନାଲ ଖୋଳାଇ ସେହି ଅଞ୍ଚଳରେ ସ୍ଥାୟୀ ଜଳସେଚନର ବ୍ୟବସ୍ଥା ଭଳି ଲୋକପ୍ରିୟ କାର୍ଯ୍ୟମାନ ସେ କରିଥିଲେ। ବିନୋଦ କାନୁନ୍‌ଗୋଙ୍କର ଜଣେ ବିଧାନସଭା ସଭ୍ୟ ହେବାର ସମସ୍ତ ଯୋଗ୍ୟତା ଥିଲା। ମାତ୍ର ସେ ପୂର୍ବରୁ ସକ୍ରିୟ ରାଜନୀତିରୁ ଅଲଗା ହୋଇ ରଚନାତ୍ମକ କାର୍ଯ୍ୟ କରୁଥିବାବେଳେ ପୁଣି ସକ୍ରିୟ ରାଜନୀତିକୁ ଫେରିଥିଲେ। କଂଗ୍ରେସ ଦଳର ପ୍ରାର୍ଥୀ ରାଜକୃଷ୍ଣ ବୋଷଙ୍କ ଭଳି ତାଙ୍କର ଆର୍ଥିକ ସମ୍ବଳ ନ ଥିଲା। ତାଙ୍କ ପରାଜୟ ଓଡ଼ିଆ ସାହିତ୍ୟପାଇଁ ଏକ ଆଶୀର୍ବାଦ ଭଳି କାର୍ଯ୍ୟ କରିଥିଲା। ସେ କ୍ଷମତା ରାଜନୀତିରେ ରହିଯାଇଥିଲେ ଓଡ଼ିଆ ସାହିତ୍ୟ 'ଜ୍ଞାନମଣ୍ଡଳ' ଭଳି ଅମୂଲ୍ୟ ଜ୍ଞାନକୋଷ ପାଇ ପାରି ନ ଥାନ୍ତା।

## ଲୋକଶିକ୍ଷା କାର୍ଯ୍ୟକ୍ରମ ହାତକୁ ନେଲେ

ପ୍ରଥମ ସାଧାରଣ ନିର୍ବାଚନରେ ପରାସ୍ତ ହେବାପରେ ବିନୋଦ ବାବୁ ରଚନାତ୍ମକ କାର୍ଯ୍ୟକ୍ରମ ତଥା କ୍ଷମତା ରାଜନୀତିରୁ ସଂପୂର୍ଣ୍ଣ ଅଲଗା ହୋଇ ଗାନ୍ଧିଜୀଙ୍କ ପ୍ରଦର୍ଶିତ ଲୋକଶିକ୍ଷା କାର୍ଯ୍ୟକ୍ରମରେ ମନୋନିବେଶ କରିବାପାଇଁ ସ୍ଥିର କଲେ। ମହାତ୍ମା ଗାନ୍ଧିଙ୍କ

ମୃତ୍ୟୁପରେ ତାଙ୍କ ପ୍ରଦର୍ଶିତ ନୀତି ଓ କାର୍ଯ୍ୟକ୍ରମ ପ୍ରତି କଂଗ୍ରେସ ସରକାର ଗୁରୁତ୍ୱ ଦେଲେ ନାହିଁ। ସେହି ସବୁ କାର୍ଯ୍ୟକ୍ରମର ପ୍ରସାର ପ୍ରତି କର୍ମୀମାନଙ୍କର ଆଗ୍ରହ ମଧ୍ୟ କମିଆସିଥିଲା। ତେଣୁ ସମଗ୍ର ଗ୍ରାମସେବା ଭଳି କାର୍ଯ୍ୟକ୍ରମ ପ୍ରତି ତାଙ୍କର ଆଗ୍ରହ କମି ଆସିଲା। ଏପରି ଅଧାପଚରିଆ କାମରେ ସେ ସାରା ଜୀବନ ଅତିବାହିତ କରିବାକୁ ଚାହିଁଲେ ନାହିଁ। ତେଣୁ ଅବଶିଷ୍ଟ ଜୀବନ କାଳପାଇଁ ଗାନ୍ଧିଜୀଙ୍କର ଗୋଟିଏ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମରେ ନିଜକୁ ନିୟୋଜିତ କରିବାପାଇଁ ମନସ୍ଥ କଲେ। ସେତେବେଳକୁ ସେ 'ଗାନ୍ଧିକଥା', 'ପବନ', 'ମାଛଚାଷ', 'ଭୋଟ କଥାଟା କଣ' ଓ 'ବାପୁଜୀଙ୍କ ଉତ୍କଳରେ ପଦଯାତ୍ରା' ଆଦି ଛୋଟଛୋଟ ବହିଗୁଡ଼ିକ ଲେଖିସାରିଥିଲେ। ସେ ବହିଗୁଡ଼ିକ ଲୋକପ୍ରିୟ ହୋଇଥିଲା । ତେଣୁ ସେ ଲେଖିଲେ ଲୋକେ ଆଗ୍ରହରେ ପଢ଼ିବେ ବୋଲି ତାଙ୍କର ବିଶ୍ୱାସ ହୋଇଯାଇଥିଲା।

ବିନୋଦ ବାବୁ ଓଡ଼ିଆରେ 'ଏନ୍‌ସାଇକ୍ଲୋପିଡିଆ' ବା ଯାହାକୁ ସେ ଜ୍ଞାନମଣ୍ଡଳ ବୋଲି ନାମଦେଲେ ସେଥିପାଇଁ ସମସ୍ତ ସମୟ ଦେଇ କାର୍ଯ୍ୟ କରିବା ପୂର୍ବରୁ ସେ ରାଜ୍ୟ ସରକାରଙ୍କ ପ୍ରୌଢ଼ଶିକ୍ଷା ବିଭାଗ ତଥା ଅନ୍ୟ ବିଭାଗପାଇଁ ସରକାରଙ୍କ ଅନୁରୋଧ କ୍ରମେ କେତେ ଖଣ୍ଡି ସୁଖପାଠ୍ୟ ପୁସ୍ତକ ପ୍ରଣୟନ କରି ଦେଇଥିଲେ। ସେତେବେଳେ ନୂଆ ହୋଇ ସାକ୍ଷର ହୋଇଥିବା ଲୋକଙ୍କପାଇଁ କେତେଖଣ୍ଡି ସହଜ ଓ ସରଳ ଭାଷାରେ ସୁଖପାଠ୍ୟ ପୁସ୍ତକ ପ୍ରକାଶ କରିବାକୁ ତତ୍‌କାଳୀନ ପ୍ରଧାନ ଶିକ୍ଷା ମୌଲାନା ଆଜାଦ ଓଡ଼ିଶା ସରକାରଙ୍କୁ ଜଣାଇଦେଲେ। ସେଥିରେ କୃଷି, ସ୍ୱାସ୍ଥ୍ୟ, ମାଛଚାଷ, ସମବାୟ, ଗୋପାଳନ ଓ ବିଭିନ୍ନ ବିଷୟରେ ସାଧାରଣ ଲୋକେ ଜାଣିବା ଭଳି ବିବରଣୀମାନ ରହିଥିବ ବୋଲି କୁହା ଯାଇଥିଲା। ସେତେବେଳର ଓଡ଼ିଶାର ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ର ବିନୋଦ ବାବୁଙ୍କୁ ଡକାଇ ଅଳ୍ପଦିନ ଭିତରେ ଏହିଭଳି ବହି ଖଣ୍ଡିଏ ସରଳ ଭାଷାରେ ଲେଖିଦେବାପାଇଁ ଅନୁରୋଧ କଲେ। ସେ ଆଠ ଦିନ ଭିତରେ ଏହିପରି ବହି ଖଣ୍ଡେ ଲେଖି ଦେଇଥିଲେ। ସେ ନିଜେ ଏହି ବହି ଖଣ୍ଡିକ ଛପାଇ ରାଜ୍ୟ ସରକାରଙ୍କ ଶିକ୍ଷା ବିଭାଗକୁ ଯୋଗାଇ ଦେଇଥିଲେ।

ଏହାପରେ ସେତେବେଳର ରାଜ୍ୟ ସରକାରଙ୍କ ପ୍ରୌଢ଼ଶିକ୍ଷା ବିଭାଗ ଅଫିସର ଡକ୍ଟର ମାୟାଧର ମାନସିଂହଙ୍କ ଅନୁରୋଧକ୍ରମେ ସେ ଆଉ ଦୁଇ ଖଣ୍ଡି ପୁସ୍ତକ ଲେଖିଥିଲେ। ଦୁଇଖଣ୍ଡି ଇଂରାଜୀ ପୁସ୍ତକ ଅନୁସରଣରେ ଓଡ଼ିଆରେ ବହି ଦି'ଖଣ୍ଡି ସେ ଲେଖିଥିଲେ। ପ୍ରଥମ ପୁସ୍ତକଟି ହେଲା- Agriculture and Cottage Industry in Japan (ଜାପାନରେ କୃଷି ଓ କୁଟୀର ଶିଳ୍ପ) ଏବଂ ଅନ୍ୟ ପୁସ୍ତକଟି ହେଲା- Switzerland Shows the Way (ସୁଇଜରଲାଣ୍ଡ ବାଟ ଦେଖାଇଛି)। ମାତ୍ର ତାଙ୍କ ଅନୁରୋଧ କ୍ରମେ ଦ୍ୱିତୀୟ ପୁସ୍ତକଟିର ନାମ ରଖାଯାଇଥିଲା- ଗଣତନ୍ତ୍ରର ଆଦର୍ଶ ସୁଇଜରଲାଣ୍ଡ। ଓଡ଼ିଶା ସରକାର ଏହି ପୁସ୍ତକ ଦି'ଖଣ୍ଡକୁ ବହୁ ସଂଖ୍ୟାରେ ଛପାଇ ବାଣ୍ଟିଥିଲେ। ବିନୋଦ ବାବୁଙ୍କ ବିଷୟରେ ଡଃ ମାନସିଂହ ତାଙ୍କ ମନ୍ତବ୍ୟରେ ଲେଖିଥିଲେ- "କାନୁନ୍‌ଗୋଙ୍କୁ

ଯଦି ଏ ଜାତି, ଏ ସମାଜ, ଏ ସରକାର ସୁଯୋଗ ଦିଅନ୍ତା ତା'ହେଲେ ଓଡ଼ିଆ ଭାଷାଭାଷୀ ଲୋକେ ବହୁ ଅମୂଲ୍ୟ ଜ୍ଞାନ ସଂପଦର ଅଧିକାରୀ ହୁଅନ୍ତେ।''

ଏହି ସମୟରେ ସେ ଏହିପରି ଆଉ ଦି ଖଣ୍ଡି ବହି ଲେଖିଥିଲେ। ଗୋଟିଏ ହେଲା- ମାଛଚାଷ। ଓଡ଼ିଶାରେ ଅନୁଷ୍ଠିତ ହେଉଥିବା ନିଖିଳ ଭାରତ ମାଛଚାଷ ସମ୍ମିଳନୀ ଉଦ୍ଦେଶ୍ୟରେ ମାଛଚାଷ ବିଷୟରେ ସାଧାରଣ ଲୋକେ ବୁଝିପାରିବା ଭଳି ବହିଖଣ୍ଡିଏ ଲେଖିଦେବାପାଇଁ ସେତେବେଳର ମତ୍ସ୍ୟ ବିଭାଗ ମନ୍ତ୍ରୀ ଶାନ୍ତନୁ କୁମାର ଦାସ ତାଙ୍କୁ ଅନୁରୋଧ କରିଥିଲେ। ସେ ମତ୍ସ୍ୟ ବିଭାଗ ନିର୍ଦ୍ଦେଶକଙ୍କ ସହ ଆଲୋଚନା କରି ଏବଂ ଗାଡ଼ିଆ ପୋଖରୀରେ ମାଛ ବିହନ ବୃଦ୍ଧି କରିବା ପାଇଁ ଚାଲିଥିବା ଗବେଷଣା ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ହାସଲ କରି ମାଛ ଚାଷ ବିଷୟରେ ବହି ଖଣ୍ଡିଏ ଲେଖି ଦେଇଥିଲେ। ଅନ୍ୟ ବହି ଖଣ୍ଡିକ ହେଲା ଦାନ୍ତ ବିଷୟରେ। ଏହି ବହିଟିର ସେ ନାଁ ଦେଇଥିଲେ ''ସ୍ୱାସ୍ଥ୍ୟ ଦୁର୍ଗର ଜାଗ୍ରତ ପ୍ରହରୀ।'' ସ୍ୱାସ୍ଥ୍ୟରକ୍ଷା ଦିଗରେ ଦାନ୍ତର ଉପଯୋଗିତା ତଥା ଦାନ୍ତ ସହିତ ସଂପର୍କ ଥିବା କେତେକ ରୋଗ ସଂବନ୍ଧରେ ସେ ସେତେବେଳର ଦାନ୍ତ ଚିକିତ୍ସା ବିଶେଷଜ୍ଞ ଡାକ୍ତର ଜର୍ଜ ପଟ୍ଟନାୟକଙ୍କଠାରୁ କେତେକ ପୁସ୍ତକ ଆଣି ପଢ଼ି ଓ ତାଙ୍କଠୁ ବୁଝି ଏହି ବହି ଖଣ୍ଡି ଲେଖିଥିଲେ। ନିଜେ ଡଃ ପଟ୍ଟନାୟକ ଏହି ବହିର ମୁଖବନ୍ଧ ଲେଖି ଦେଇଥିଲେ।

## 'କୃଷକ' ପତ୍ରିକାର ସଂପାଦକ

୧୯୫୧-୫୨ ମସିହା ସାଧାରଣ ନିର୍ବାଚନ ପରେ ତାଙ୍କ ସମାଜବାଦୀ ବନ୍ଧୁମାନଙ୍କର ଅନୁରୋଧକ୍ରମେ ବିନୋଦ ବାବୁ ସମାଜବାଦୀ ଦଳର ମୁଖପତ୍ର ସାପ୍ତାହିକ 'କୃଷକ'ର ସଂପାଦନା ଦାୟିତ୍ୱ ଗ୍ରହଣ କରିଥିଲେ। ଏହି ପତ୍ରିକାଟି ୧୯୩୪ ମସିହାରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ଗଠିତ କୃଷକ ଆନ୍ଦୋଳନ ପକ୍ଷରୁ ପ୍ରଥମେ ପ୍ରକାଶ ପାଇଥିଲା। ବିନୋଦ ବାବୁ ଦୁଇ ବର୍ଷ ପର୍ଯ୍ୟନ୍ତ ଏହି ପତ୍ରିକାଟି ଦକ୍ଷତାର ସହିତ ସଂପାଦନା ଓ ପରିଚାଳନା କରିଥିଲେ। ସାପ୍ତାହିକ 'କୃଷକ'ରେ ସମାଜବାଦୀ ଦଳର କାର୍ଯ୍ୟକଳାପ ସାଙ୍ଗକୁ ଶାସନର ଦୁର୍ନୀତି ଓ ଭ୍ରଷ୍ଟାଚାର ବିଷୟରେ ତୀବ୍ର ସମାଲୋଚନା କରାଯାଉଥିଲା। ସେଥିପାଇଁ 'କୃଷକ'ର ବିକ୍ରି ବୃଦ୍ଧି ପାଇଥିଲା।

## ମାସିକ ''ଶିଶୁ ସଂପଦ''ର ସଂପାଦନା

ଜ୍ଞାନମଣ୍ଡଳର ସଂପାଦନା ଆରମ୍ଭ କରିବା ପୂର୍ବରୁ ବିନୋଦ କାନୁନ୍‌ଗୋ କଟକରୁ 'ଶିଶୁ ସଂପଦ' ନାମରେ ୧୯୫୪ ମସିହାରେ ପିଲାଙ୍କ ପାଇଁ ଗୋଟିଏ ମାସିକ ପତ୍ରିକା ପ୍ରକାଶ କରିଥିଲେ। ୪୮ପୃଷ୍ଠାର ଏହି ପତ୍ରିକାଟିର ମୂଲ୍ୟ ରଖିଥିଲେ ବାର୍ଷିକ

ତିନି ଟଙ୍କା। ସେତେବେଳେ ପିଲାଙ୍କପାଇଁ ଉଦ୍ଦିଷ୍ଟ ଏହି ପତ୍ରିକାଟି ପ୍ରକାଶ କରିବାପାଇଁ ତାଙ୍କ ପାଖରେ ଅର୍ଥ ନ ଥିଲା। ତେଣୁ ତାଙ୍କର କେତେକ ବନ୍ଧୁଙ୍କ ସହିତ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯାଇ ଆଗ ୫୦୦ ଜଣ ଗ୍ରାହକ ସଂଗ୍ରହ କରିଥିଲେ। ଏହି ପତ୍ରିକାଟିରେ ଓଡ଼ିଶାର ଚାରି ଜଣ ବିଶିଷ୍ଟ କବି ତାଙ୍କ ଅନୁରୋଧକ୍ରମେ କବିତା ଲେଖୁଥିଲେ ଓ ଅବଶିଷ୍ଟ ବିଷୟଗୁଡ଼ିକ ସେ ନିଜେ ଲେଖୁଥିଲେ। ଜାତୀୟକବି ଚାରି ଜଣ ହେଲେ- ଜାତୀୟକବି ବୀରକିଶୋର ଦାସ, ବିପ୍ଳବୀ କବି ଅନନ୍ତ ପଟ୍ଟନାୟକ, କବି ରାଧାମୋହନ ଗଡ଼ନାୟକ ଓ କବି ଗୋଦାବରୀଶ ମହାପାତ୍ର। ପତ୍ରିକାଟି କ୍ରମଶଃ ଲୋକପ୍ରିୟ ହୋଇଥିଲା ଓ ବିକ୍ରିସଂଖ୍ୟା ତିନି ହଜାର ପର୍ଯ୍ୟନ୍ତ ବୃଦ୍ଧି ପାଇଥିଲା। ସେହି ସମୟରେ ସେ 'ଜ୍ଞାନମଣ୍ଡଳ' ପ୍ରଣୟନପାଇଁ ପ୍ରସ୍ତୁତି ଆରମ୍ଭ କରିଥିଲେ। ପତ୍ରିକା ସଂପାଦନାରେ ଲାଗିବାରୁ ' ଜ୍ଞାନମଣ୍ଡଳ' ପ୍ରସ୍ତୁତି କାମରେ ବାଧା ପଡ଼ିଲା। ତେଣୁ ସେ ଦୁଇ ବର୍ଷ ପରେ 'ଶିଶୁ ସଂପଦ' ପ୍ରକାଶନ ବନ୍ଦ କରିଦେଲେ।

## 'ଲୋକଶାସନ' ସାମୟିକ ପତ୍ରିକା ସଂପାଦନା

ଏହା ଛଡ଼ା ସେତେବେଳେ ବିନୋଦ ବାବୁ 'ଲୋକ ଶାସନ' ବୋଲି ଗୋଟିଏ ସାପ୍ତାହିକ ପତ୍ରିକାର ସଂପାଦନା କିଛି ଦିନ କରିଥିଲେ। ସେତେବେଳେ ଓଡ଼ିଶାର କଂଗ୍ରେସ ଦଳ ଭିତରେ ଗୋଷ୍ଠୀ କନ୍ଦଳ ଚାଲିଥାଏ। ଏହା ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବା ବେଳର କଥା। ସେତେବେଳେ ଡକ୍ଟର ହରେକୃଷ୍ଣ ମହତାବ ବମ୍ବେର ରାଜ୍ୟପାଳ ଥାଇ ଓଡ଼ିଶା ଶାସନ ଅଧିକାରୀ ହୋଇ ଆସିବାକୁ ଚାହୁଁଥାନ୍ତି ଓ ତାଙ୍କ ସପକ୍ଷରେ କଂଗ୍ରେସ ଦଳର ଗୋଟିଏ ଗୋଷ୍ଠୀ ଥାଆନ୍ତି। ଆଉ ଗୋଟିଏ ଗୋଷ୍ଠୀ ନବକୃଷ୍ଣ ଚୌଧୁରୀଙ୍କୁ ଏଠି ରଖିବାକୁ ଚାହୁଁଥା'ନ୍ତି। ବିନୋଦ କାନୁନ୍‌ଗୋ ସେହି ଗୋଷ୍ଠୀର ସମର୍ଥକ ବୋଲି ବିବେଚିତ ହେଉଥାନ୍ତି। ଏହିପରି ସେତେବେଳେ ସେ ଜଣେ ବିବାଦୀୟ ବ୍ୟକ୍ତି ବୋଲି କୁହାଯାଉଥିଲେ ମଧ୍ୟ ସେଥିରେ ସେ ବିଚଳିତ ନ ହୋଇ ନିର୍ଭୀକ ଭାବରେ ତାଙ୍କ ମତ ଲେଖି ଚାଲିଥିଲେ। ମାତ୍ର ସବୁ ଛାଡ଼ି ଦେଇ ଜ୍ଞାନମଣ୍ଡଳ ପ୍ରସ୍ତୁତିରେ ଲାଗିବେ ବୋଲି ସେ 'ଲୋକଶାସନ' ପତ୍ରିକା ପ୍ରକାଶନ ମଧ ବନ୍ଦ କରିଦେଲେ।

## ଓଡ଼ିଆରେ ଏନ୍‌ସାଇକ୍ଲୋପିଡିଆପାଇଁ ପରିକଳ୍ପନା

ଓଡ଼ିଶା ସରକାରଙ୍କ ଅନୁରୋଧକ୍ରମେ ବିନୋଦ କାନୁନ୍‌ଗୋ କେତେ ଖଣ୍ଡି ବିଜ୍ଞାନ ତଥା ଅନ୍ୟ ପୁସ୍ତକ ଲେଖି ଦେବାପରେ ତାହା ସୁଖପାଠ୍ୟ ପୁସ୍ତକରୂପେ ଆଦୃତ ହେଲା। ଏଥିରେ ନିଜର ଦକ୍ଷତା ଉପରେ ତାଙ୍କର ବିଶ୍ୱାସ ଆସି ଯାଇଥିଲା। ତା'ପରେ ଅନେକ ଶିଶୁ ସାହିତ୍ୟ, ଜୀବନୀ ତଥା ସ୍ୱାଧୀନତା ସଂଗ୍ରାମର ଇତିହାସ

ଲେଖି ନିଜେ ପ୍ରକାଶ କରିବାପାଇଁ ସେ ମନ ବଳେଇଥିଲେ। ମାତ୍ର ଏଥିପାଇଁ ଯଥେଷ୍ଟ ଆର୍ଥିକ ସମ୍ବଳ ଦରକାର। ସେଭଳି ଆର୍ଥିକ ସମ୍ବଳ ତାଙ୍କର ନ ଥିଲା। ଖଣ୍ଡିଏ ବହି ପ୍ରକାଶ କରି ସାରିଲାପରେ ସେ ବହି ବିକ୍ରି ହେବ ଓ ସେଇ ପଇସାରେ ଆଉ ଖଣ୍ଡିଏ ବହି ଛପା ହେବ। ଏହିପରି କେତେ ଦିନ ସେ କରିବେ ? ସେତେବେଳକୁ ସେ ଇଂରାଜୀ ''ଏନସାଇକ୍ଲୋପିଡିଆ ବ୍ରିଟାନିକା''ଗ୍ରନ୍ଥ ଦେଖି ସାରିଥିଲେ ଏବଂ ଏହାର ପୃଷ୍ଠା ଓଲଟାଇ ଏ ବିଷୟରେ ମୋଟାମୋଟି ଧାରଣା କରି ସାରିଥିଲେ। ସେ ସମୟରେ ସେ କଟକରେ ରହି ନ ଥାନ୍ତି। ଗାଁରେ ରହୁଥିଲେ ଓ ଦରକାରବେଳେ ମଝିରେ ମଝିରେ କଟକ ଆସୁଥିଲେ।

୧୯୫୪ ମସିହା ଜାନୁଆରୀ ମାସରେ ବିନୋଦ ବାବୁ ପ୍ରଥମେ କଟକ ଆସି ସ୍ଥାୟୀ ଭାବରେ ରହିଲେ। ସେ ଏକ ପ୍ରକାର ଶୂନ୍ୟ ହସ୍ତରେ କଟକ ଆସି ପ୍ରଥମେ ତାଙ୍କର ଜଣେ ଆତ୍ମୀୟଙ୍କ ବସାରେ ରହିଥିଲେ। ତାପରେ ନିମିଚଉଡ଼ିସ୍ଥ ତାଙ୍କର ବନ୍ଧୁ ସ୍ୱାଧୀନତା ସଂଗ୍ରାମର ସାହାଯ୍ୟକାରୀ ବଳାଇ ପାଲିତଙ୍କ ବାସଭବନରେ ରହିଥିଲେ। ଶେଷରେ ଓଡ଼ିଆରେ ଗୋଟିଏ ସେଟ୍ ଏନ୍‌ସାଇକ୍ଲୋପିଡିଆ ବା ଯାହାକୁ ସେ 'ଜ୍ଞାନମଣ୍ଡଳ' ବୋଲି ନାମ ଦେଇଥିଲେ ତାକୁ ସଂକଳନ କରିବାପାଇଁ ମନସ୍ଥ କଲେ। ବହୁତ ଭାବିଚିନ୍ତି ସେ ତାହା କରିଥିଲେ। ସେ ଜାଣିଥିଲେ ଯେ ଏନ୍‌ସାକ୍ଲୋପିଡିଆ ବ୍ରିଟାନିକାର ପ୍ରବନ୍ଧ ଗୁଡ଼ିକ ଶହ ଶହ ବିଜ୍ଞ ଓ ବିଦ୍ୱାନ ଲେଖିଛନ୍ତି। ଜ୍ଞାନର ବିଭିନ୍ନ ବିଭାଗ ସଂପର୍କରେ ବ୍ରିଟାନିକା ପ୍ରକାଶକଙ୍କ ନିକଟରେ ହଜାର ହଜାର ରେଫରେନ୍ସ ପୁସ୍ତକ ଓ ପ୍ରବନ୍ଧମାନ ରହିଛି। ଶହ ଶହ ଉଚ୍ଚଶିକ୍ଷିତ ବ୍ୟକ୍ତି ଏହାର ସଂକଳନ କାର୍ଯ୍ୟରେ ଲାଗିଛନ୍ତି। ନିରବଚ୍ଛିନ୍ନ ଭାବରେ ଏ କାର୍ଯ୍ୟ ଚାଲିଛି। ସେ କେମିତି ଏକୁଟିଆ ଏହା କରିବେ ? ଓଡ଼ିଶାର ବୈଜ୍ଞାନିକ ଓ ବିଦ୍ୱାନମାନଙ୍କଠାରୁ ସେ ଜ୍ଞାନମଣ୍ଡଳପାଇଁ ପ୍ରବନ୍ଧ ଲେଖାଇ ଆଣିପାରନ୍ତେ । ମାତ୍ର ଏଥିପାଇଁ ତାଙ୍କର ଆର୍ଥିକ ସମ୍ବଳ ନ ଥିଲା। ଓଡ଼ିଶାର ପ୍ରକାଶକମାନଙ୍କ ଅବସ୍ଥା ଯାହା, ସେମାନେ କେହି ଏହାର ପ୍ରକାଶନ ଓ ବିକ୍ରି ପାଇଁ ସାହସ କରନ୍ତେ ନାହିଁ।

ମାତ୍ର ଜ୍ଞାନମଣ୍ଡଳ ସଂପାଦନାର ଏ ଯେଉଁ ବିରାଟ କାର୍ଯ୍ୟ, ସେଥିରେ ସେ ହତାଶ ହେଲେ ନାହିଁ। ସେ ଭାବିଲେ ସେ ନ କଲେ ଅନ୍ୟ କେହି ତ ଏହା କରିବ ! ଓଡ଼ିଆ ଭାଷାରେ କଣ ଗୋଟିଏ ଜ୍ଞାନ ଅଭିଧାନ ରହିବ ନାହିଁ? ଗୋଟିଏ ଶବ୍ଦ ଅଭିଧାନ ପ୍ରଣୟନ କରି କିଭଳି ଏକ ବିରାଟ ଓ ଅତ୍ୟନ୍ତ ଶ୍ରମସାଧ୍ୟ କାର୍ଯ୍ୟ ସ୍ୱର୍ଗତ ଗୋପାଳ ଚନ୍ଦ୍ର ପ୍ରହରାଜ ସଂପାଦନ କରିଥିଲେ ସେ ଦୃଷ୍ଟାନ୍ତ ତାଙ୍କ ଆଗରେ ଥିଲା। ସେ ଏ ସଂପର୍କରେ ବହୁ ଚିନ୍ତା କରି ଗୋଟିଏ ସମାଧାନର ବାଟ ପାଇଲେ। ସେ ସ୍ଥିର କଲେ ଯେ ''ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକା'' ଭଳି ବିରାଟ ପାଣ୍ଡିତ୍ୟପୂର୍ଣ୍ଣ ପ୍ରବନ୍ଧମାନ ନ ଲେଖି ସାଧାରଣ ଓଡ଼ିଆ ପାଠକ, ଅଧାପାଠୁଆ ଲୋକେ ବୁଝିପାରିବା ଭଳି ଭାଷାରେ ବିଭିନ୍ନ ଜ୍ଞାତବ୍ୟ ବିଷୟମାନ ସେ ଲେଖି ଯିବେ। ସରଳ ଓ

ସହଜ ଭାଷାରେ ସୁଖପାଠ୍ୟ ବା ପପୁଲାର ଜ୍ଞାନକୋଷ ବା ଜ୍ଞାନମଣ୍ଡଳ ସେଟ୍‌ଟିଏ ଲେଖିଦେବେ। ପ୍ରଥମେ ସେ ଏହାକୁ ୭୫ ଖଣ୍ଡରେ ସମାପ୍ତ କରିବେ ବୋଲି ପରିକଳ୍ପନା କରିଥିଲେ। ପରେ ୬୦ ଖଣ୍ଡରେ ସମାପ୍ତ କରିବେ ବୋଲି ପରିକଳ୍ପନା କରିଥିଲେ।

## ଜ୍ଞାନମଣ୍ଡଳ ପ୍ରଣୟନପାଇଁ ପ୍ରସ୍ତୁତି

ବିନୋଦ ବାବୁ ସମସ୍ତ ସମୟ ଦେଇ ଜ୍ଞାନମଣ୍ଡଳ ପ୍ରଣୟନ କାର୍ଯ୍ୟରେ ମନୋନିବେଶ କରିବାପାଇଁ ମନ ସ୍ଥିର କରିବା ପରେ ରେଭେନ୍ସା କଲେଜ ହତା ଯାହା କିଶୋର ଅବସ୍ଥାରେ ତାଙ୍କର ପରିଚୟର ଦିଗ୍‌ବଳୟକୁ ବିସ୍ତାରିତ କରିଥିଲା ପୁଣି ସେହି ହତା ଭିତରେ ପ୍ରତିଷ୍ଠିତ କନିକା ଲାଇବ୍ରେରୀ 'ଜ୍ଞାନମଣ୍ଡଳ' ପ୍ରଣୟନ ପାଇଁ ତାଙ୍କ ପ୍ରସ୍ତୁତିର ପୀଠ ହେଲା। ସେ କଟକରେ ଆସି ସ୍ଥାୟୀ ଭାବରେ ରହିବା ପରେ ଦୀର୍ଘ ସାତ ବର୍ଷ କାଳ କନିକା ଲାଇବ୍ରେରୀକୁ ଯିବା ଆସିବା କରି ସେଠାରେ ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକା ତଥା ବଡ଼ ବଡ଼ ଇଂରାଜୀ ଅଭିଧାନ ଅଧ୍ୟୟନ ଓ ସେଥିରୁ ନୋଟ କରିବାରେ ଲାଗିଲେ। ସେ ପ୍ରତିଦିନ ସେଠାରେ ଛ'ସାତ ଘଣ୍ଟା ସମୟ କଟାନ୍ତି। ପ୍ରଥମ ଚାରି ବର୍ଷ ସେ ଅଭିଧାନ ଅଧ୍ୟୟନ କଲେ ଓ ତା'ପରେ ବ୍ରିଟାନିକା ପଢ଼ିଥିଲେ। ୧୯୬୦ରେ ଜ୍ଞାନମଣ୍ଡଳର ପ୍ରଥମ ଖଣ୍ଡ ବାହାରିବା ପର୍ଯ୍ୟନ୍ତ ଏହା ଥିଲା ତାଙ୍କର ଦୈନନ୍ଦିନ କାର୍ଯ୍ୟ।

ପ୍ରଥମେ ଅଭିଧାନ ପଢ଼ିବାର ତାଙ୍କର ଉଦ୍ଦେଶ୍ୟ ଥିଲା ଓଡ଼ିଆ ସାହିତ୍ୟକୁ ଶବ୍ଦ ସମୃଦ୍ଧ କରିବା। ସେ ବର୍ଣ୍ଣମାଳା ଅନୁସାରେ ଜ୍ଞାନର ଇତିହାସ ଲେଖିବାକୁ ଯାଉଥିବାରୁ ସେଥିପାଇଁ ବହୁ ଅଧିକ ଶବ୍ଦ ଦରକାର। ଓଡ଼ିଆ ଭାଷାରେ ଶବ୍ଦର ଉତ୍କଟ ଅଭାବ ସେ ଅନୁଭବ କରିଥିଲେ ଓ ସେଥିପାଇଁ ବ୍ୟଥିତ ହୋଇଥିଲେ। ଭାଷାର ସାମର୍ଥ୍ୟ ନ ଥିଲେ ତାହା ଜ୍ଞାନର ବୋଝ ସମ୍ଭାଳି ପାରିବ ନାହିଁ। ଶରୀରର ସାମର୍ଥ୍ୟ ନ ଥିଲେ ଯେପରି ଜଣେ ଭାରି ବୋଝ ସମ୍ଭାଳି ନାହିଁ, ସେହିପରି ଶବ୍ଦର ସାମର୍ଥ୍ୟ ନ ଥିଲେ ସେ ଜ୍ଞାନର ବୋଝ ବୋହି ପାରିବ ନାହିଁ। ସେଥିପାଇଁ ସେ ଓଡ଼ିଆ ଶବ୍ଦ ଭଣ୍ଡାରକୁ ସମୃଦ୍ଧ କରିବାକୁ ଅନ୍ୟ ଭାଷାରୁ, ବିଶେଷ ଭାବରେ ଇଂରାଜୀ ଭାଷାରୁ ବହୁ ସଂଖ୍ୟକ ଶବ୍ଦ ସଂଗ୍ରହ କରିବାପାଇଁ ଉଦ୍ୟମ କରିଥିଲେ। ଅନ୍ୟାନ୍ୟ ଭାରତୀୟ ଭାଷାର ସାହିତ୍ୟିକମାନଙ୍କପରି ଓଡ଼ିଆଭାଷୀମାନେ ନିଜର ମାତୃଭାଷା ଓଡ଼ିଆ ସାହାଯ୍ୟରେ ବିଶ୍ୱର ସବୁ ଜ୍ଞାନର ଅଧିକାରୀ ହେବାକୁ ପଡ଼ିବ ବୋଲି ତାଙ୍କର ମତ ଥିଲା। ତେଣୁ ସେ ପ୍ରଥମେ ଇଂରାଜୀ ଅଭିଧାନ ଆୟତ୍ତ କରି ଓଡ଼ିଆ ଭାଷାର ଶବ୍ଦ ଭଣ୍ଡାରକୁ ସମୃଦ୍ଧ କରିଥିଲେ। ତାଙ୍କ ମତରେ ଓଡ଼ିଆ ଭାଷାରେ ବହୁ ସଂଖ୍ୟକ ପୁସ୍ତକ ଓ ଜ୍ଞାନ ବିଜ୍ଞାନର ବିଭିନ୍ନ ବିଷୟର ପୁସ୍ତକମାନ ଲେଖା ହୋଇଗଲେ ତଥା ବହୁସଂଖ୍ୟକ ପୁସ୍ତକ ଅନ୍ୟ ଭାଷାରୁ ଓଡ଼ିଆରେ ଭାଷାନ୍ତରୀତ

ହୋଇଗଲେ ଯାଇ ଓଡ଼ିଆ ଭାଷାର ସାମର୍ଥ୍ୟ ବଢ଼ିବ। ଇଂରାଜୀ ଭାଷାର ସାମର୍ଥ୍ୟ ଏହିପରି ବୃଦ୍ଧି ପାଇଛି।

ବିନୋଦ ବାବୁ ଉପଲବ୍ଧି କରିଥିଲେ ଯେ ଅର୍ଥନୀତି, ସମାଜ ଶାସ୍ତ୍ର, ରାଜନୀତି ତଥା ସାହିତ୍ୟ ଇତ୍ୟାଦି ପୁସ୍ତକରେ ଯେଉଁ ସବୁ ଶବ୍ଦର ବ୍ୟବହାର ରହିଛି ସେଥିଭିତରୁ ବହୁ ଶବ୍ଦ ସହିତ ସେ ଭଣା ଅଧିକେ ପରିଚିତ ଥିଲେ। ମାତ୍ର ବିଜ୍ଞାନ ସଂବନ୍ଧରେ ଜାଣିବାପାଇଁ ଯେତେ ଶବ୍ଦ ଦରକାର ତା ତୁଳନାରେ ସେ ଜାଣିଥିବା ଶବ୍ଦସଂଖ୍ୟା ଖୁବ୍ କମ୍। ତେଣୁ ଜ୍ଞାନମଣ୍ଡଳ ଲେଖିବାପାଇଁ ତାଙ୍କର ଯେତିକି ଶବ୍ଦ ସମ୍ବଳ ରହିଛି ତାହା ତାଙ୍କ ଲକ୍ଷ୍ୟ ସାଧନପାଇଁ ଆଦୌ ଯଥେଷ୍ଟ ନୁହେଁ। ତେଣୁ ସେ ପ୍ରଥମେ ଇଂରାଜୀ ଭାଷାରେ ପ୍ରଣୀତ ଅକ୍ସଫୋର୍ଡ଼ ଅଭିଧାନ, ଚେମ୍ବର୍‌ସ୍ ଅଭିଧାନ ଓ ୱେବଷ୍ଟର ଅଭିଧାନ ଭଲ କରି ପଢ଼ି ନୋଟ କରି ପକାଇଥିଲେ। ଏହି ସବୁ ଅଭିଧାନ ପଢ଼ି ସେ ଜାଣିଲେ ଯେ ଇଂରାଜୀ ଭାଷାରେ ବର୍ତ୍ତମାନ ପ୍ରାୟ ପାଞ୍ଚ ଲକ୍ଷ ଶବ୍ଦ ରହିଛି। ସେଥିଭିତରୁ ତିରିଶ ହଜାର ଶବ୍ଦ ଜାଣିଗଲେ ଜଣେ ଭଲ ଭାବରେ ଇଂରାଜୀ ଭାଷାରେ ଲିଖିତ ପୁସ୍ତକମାନ ପଢ଼ି ପାରିବ, ଲେଖି ପାରିବ ଓ କହିପାରିବ। ଇଂରେଜମାନେ ଅନ୍ୟ ଭାଷାରୁ ବହୁ ଶବ୍ଦ ଆଣି ନିଜ ଭାଷାର ସାମର୍ଥ୍ୟ ବୃଦ୍ଧି କରିଛନ୍ତି। ଯୁକ୍ତରାଷ୍ଟ୍ର ଆମେରିକା ଓ କାନାଡ଼ା ପ୍ରଭୃତି ଇଂରାଜୀ ଭାଷାଭାଷୀ ଦେଶରେ ପ୍ରଚଳିତ ଇଂରାଜୀ ଭାଷା, ବହୁ ସଂଖ୍ୟକ ଇଉରୋପୀୟ ଶବ୍ଦ ଓ ସ୍ଥାନୀୟ ଅଧିବାସୀଙ୍କ ଶବ୍ଦକୁ ଇଂରାଜୀ ପୋଷାକ ପିନ୍ଧାଇ ଇଂରାଜୀ ଭାଷାରେ ଗ୍ରହଣ କରିନିଆ ହୋଇଛି। ପୃଥିବୀରେ ଯେଉଁ ଭାଷାରେ ହେଉ ଭଲ ବହିଟିଏ ପ୍ରକାଶ ପାଇଲେ ତାହା ସଙ୍ଗେ ସଙ୍ଗେ ଇଂରାଜୀ ଭାଷାରେ ଅନୁବାଦ କରିଦେବାପାଇଁ ବ୍ୟବସ୍ଥା କରାଯାଇଥାଏ। ଯେଉଁ ଶବ୍ଦଟି ଅନୁବାଦ କରିବାରେ ଅସୁବିଧା ହୁଏ ସେ ଶବ୍ଦଟି ସେହିଭଳି ସେମାନେ ରଖିଦେଇ ତାକୁ ବୁଝାଇ ଦିଅନ୍ତି। ଭାରତୀୟ ଭାଷାରେ ପ୍ରଚଳିତ 'ପୁଣ୍ୟ' ଓ 'ଅଭିମାନ' ଭଳି ଶବ୍ଦକୁ ସେମାନେ ସେହିଭଳି ରଖିଛନ୍ତି। ଓଡ଼ିଆ ଶବ୍ଦ ଭଣ୍ଡାରକୁ ସମୃଦ୍ଧ କରିବାକୁ ହେଲେ ଆମକୁ ସେହିପରି କରିବାକୁ ହେବ। ନିଜର ମାତୃଭାଷା ଓଡ଼ିଆକୁ ସମସ୍ତ ଜ୍ଞାନର ଅଧିକାରୀ କରିବାକୁ ହେଲେ ଏହା କରାଯିବା ଦରକାର।

ସେତେବେଳେ ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକାର ୨୪ ଖଣ୍ଡରେ ଥିବା ୪୦ ହଜାରରୁ ଅଧିକ ପ୍ରବନ୍ଧ ଭିତରୁ କେଉଁଗୁଡ଼ିକୁ ବାଦ ଦେବେ ତାହା ନିର୍ଦ୍ଧାରଣ କରିବାପାଇଁ ସେ ଏହାର ସବୁ ପ୍ରବନ୍ଧ ଉପରେ ଆଖି ପକାଇ ଯାଇଥିଲେ। ପୃଥିବୀର ବହୁ ସଂଖ୍ୟକ ନାମ ଏଥିରେ ରହିଛି। ସେମାନେ ତାଙ୍କ ଦେଶର ମାପ କାଠିରେ ବଡ଼। ସେମାନଙ୍କ ଭିତରୁ ଯେଉଁମାନଙ୍କର ସମଗ୍ର ମାନବ ସମାଜପାଇଁ କିଛି ଅବଦାନ ରହିଛି ସେହି ନାମମାନ ନୋଟ କରି ଅନ୍ୟମାନଙ୍କୁ ବାଦ ଦେଇଥିଲେ। ସେହିପରି ଭାରତବର୍ଷର ବହୁ ପୁରାଣ, ଦେବା ଦେବୀ ଓ ସ୍ଥାନ ବ୍ରିଟାନିକାରେ ବ୍ରିଟାନିକାରେ

ଉଲ୍ଲେଖ ନାହିଁ। ବ୍ରିଟାନିକାରେ ଇଉରୋପ ଓ ଆମେରିକାର ହଜାର ହଜାର ଭୌଗୋଳିକ ଛୋଟ ଛୋଟ ସ୍ଥାନ, ପାହାଡ଼ ଓ ନଦୀର ବର୍ଣ୍ଣନା ରହିଛି। ସେଗୁଡ଼ିକ 'ଜ୍ଞାନମଣ୍ଡଳ'ରେ ସ୍ଥାନ ପାଇବାର ଆବଶ୍ୟକତା ନାହିଁ ବୋଲି ସେ ଅନୁଭବ କରିଥିଲେ। କେଉଁ ନୀତି ଅନୁସରଣ କରି ସେ ବ୍ୟକ୍ତି, ସ୍ଥାନ, ନଦୀ ବା ପାହାଡ଼ ବିଷୟ ଜ୍ଞାନମଣ୍ଡଳରେ ସ୍ଥାନ ଦେବେ ତାହା ପ୍ରଥମେ ସ୍ଥିର କରିଦେଇଥିଲେ।

## ଜ୍ଞାନକୋଷ ପ୍ରକାଶନପାଇଁ କେନ୍ଦ୍ର ସରକାରଙ୍କ ଉଦ୍ୟମ

ବିନୋଦ ବାବୁ ଏନସାଇକ୍ଲୋପିଡିଆ ବ୍ରିଟାନିକା ଓ ଇଂରାଜୀ ଅଭିଧାନ ଅଧ୍ୟୟନ କରି ସେଗୁଡ଼ିକୁ ବିଭିନ୍ନ ଫାଇଲରେ ସଜାଇ ରଖି ଶୀଘ୍ର ପ୍ରଥମ ଖଣ୍ଡ ଜ୍ଞାନମଣ୍ଡଳ ପ୍ରକାଶ କରିଦେବାପାଇଁ ପ୍ରସ୍ତୁତ ହେଉଥିବାବେଳେ ଭାରତ ସରକାର ଭାରତୀୟ ଆଞ୍ଚଳିକ ଭାଷାମାନଙ୍କରେ ଏନସାଇକ୍ଲୋପିଡିଆ ବ୍ରିଟାନିକା ଅନୁସରଣରେ ବିଶ୍ୱକୋଷ ବା ଜ୍ଞାନ କୋଷ ପ୍ରଣୟନ ପାଇଁ ୧୯୫୨ ମସିହାରେ ଏକ ପରିକଳ୍ପନା ରାଜ୍ୟ ସରକାରମାନଙ୍କୁ ପଠାଇ ଦେଇଥିଲେ। ସେତେବେଳେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଓ ଶିକ୍ଷାମନ୍ତ୍ରୀ ମୌଲାନା ଆଜାଦ ଭାରତୀୟ ଭାଷାମାନଙ୍କରେ ଲେଖକ ଓ ଗବେଷକମାନଙ୍କପାଇଁ ଏହିଭଳି ଏନ୍‌ସାଇକ୍ଲୋପିଡିଆ ବା ବିଶ୍ୱକୋଷ ଦରକାର ବୋଲି ଅନୁଭବ କରିଥିଲେ। ସେତେବେଳକୁ କେବଳ ପଶ୍ଚିମବଙ୍ଗଳାରେ ନଗେନ ବସୁଙ୍କର ବଙ୍ଗଳା ଭାଷାରେ ଏହିଭଳି ବିଶ୍ୱକୋଷ ୨୪ ଖଣ୍ଡ ପ୍ରକାଶିତ ହୋଇଥାଏ। ଭାରତ ସରକାର ଆଞ୍ଚଳିକ ଭାଷାରେ ବିଶ୍ୱକୋଷ ପ୍ରକାଶନର ଆର୍ଥିକ ଦାୟିତ୍ୱ ବହନ କରୁଥିବାରୁ ବିଭିନ୍ନ ଭାଷାରେ ଏଥିପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା।

ଓଡ଼ିଆ ଭାଷାରେ ଏହିଭଳି ଏକ ଜ୍ଞାନକୋଷ ପ୍ରଣୟନପାଇଁ ୧୯୫୭ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ବିଶିଷ୍ଟ କବି ଓ ଗବେଷକ ଡଃ ମାୟାଧର ମାନସିଂହଙ୍କୁ ନିଯୁକ୍ତ କଲେ। ସଂପାଦକମଣ୍ଡଳିରେ ପାଞ୍ଚ ଜଣ ଯୋଗ୍ୟ ବିଦ୍ୱାନ ରହିଲେ। ମାତ୍ର ସେମାନଙ୍କ ଭିତରେ ଥିଲେ ଜଣେ ମାତ୍ର ବୈଜ୍ଞାନିକ। ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ ଡଃ ପ୍ରାଣକୃଷ୍ଣ ପରିଜା। ସେ ବିନୋଦ ବାବୁଙ୍କୁ ଏହି ଜ୍ଞାନକୋଷ ସଂକଳନ କାର୍ଯ୍ୟରେ ନିଯୁକ୍ତ କରିବାପାଇଁ ନିଜେ ଉଦ୍ୟମ କରିଥିଲେ। ମାତ୍ର ଏଥିପାଇଁ ଶେଷରେ ଯେଉଁ ବିଜ୍ଞାପନ ପ୍ରକାଶ ପାଇଲା ସେଇ ସର୍ତ୍ତରେ ବିନୋଦ ବାବୁ ରାଜି ହେଲେ ନାହିଁ। ବିଶ୍ୱବିଦ୍ୟାଳୟ ପକ୍ଷରୁ ଜ୍ଞାନକୋଷ ପ୍ରକାଶ ପାଉଥିବାରୁ ସେଥିରେ ସେ ନିରୁତ୍ସାହିତ ହେଲେ ନାହିଁ। କାରଣ ସେ ଲୋକଶିକ୍ଷାପାଇଁ ପପୁଲାର ବା ସୁଖପାଠ୍ୟ ଜ୍ଞାନକୋଷ ପ୍ରଣୟନ କରୁଥିଲେ। ବିଶ୍ୱବିଦ୍ୟାଳୟ ପକ୍ଷରୁ ବିଶେଷ ଜ୍ଞାନଲାଭପାଇଁ ଜ୍ଞାନକୋଷ ପ୍ରକାଶ ପାଇଲେ ଲୋକେ ତାଙ୍କ ସୁଖପାଠ୍ୟ ଜ୍ଞାନକୋଷ ଅଧ୍ୟୟନ କରି ସାରି ବିଶେଷ ଜ୍ଞାନ ହାସଲପାଇଁ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରଣୀତ ଜ୍ଞାନକୋଷ

ଅଧ୍ୟୟନ କରିବେ। ସେଥିପାଇଁ ତାଙ୍କ ଚିନ୍ତାର କାରଣ ନ ଥିଲା। ବହୁ ଅର୍ଥ ବ୍ୟୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ଯେଉଁ ୪ ଖଣ୍ଡ କ୍ଷୁଦ୍ର ଜ୍ଞାନକୋଷ ପ୍ରଣୟନ କଲେ, ତା'ର ପ୍ରଥମ ଖଣ୍ଡ ୧୯୬୩ ମସିହା ପୂର୍ବରୁ ପ୍ରକାଶ ପାଇପାରିଲା ନାହିଁ। ତା ପୂର୍ବରୁ ବିନୋଦ କାନୁନ୍‌ଗୋଙ୍କ ପ୍ରଣୀତ ଜ୍ଞାନମଣ୍ଡଳର ପ୍ରଥମ ଖଣ୍ଡ ୧୯୬୦ ମସିହାରେ ପ୍ରକାଶ ପାଇ ସାରିଥିଲା। ବିଶ୍ୱବିଦ୍ୟାଳୟ ଯେଉଁ ୪ ଖଣ୍ଡ କ୍ଷୁଦ୍ର ଜ୍ଞାନକୋଷ ପ୍ରକାଶ କଲେ ତାହା ସହାୟକ ପୁସ୍ତକ। ମାତ୍ର ପ୍ରାମାଣିକ ଜ୍ଞାନକୋଷ ପ୍ରଣୟନପାଇଁ ଭାରତ ସରକାର ଅର୍ଥ ମଂଜୁର କରିଥିଲେ। ଯାହା ହେଉ ସେହି ଚାରି ଖଣ୍ଡରେ ଜ୍ଞାନକୋଷ ପ୍ରଣୟନ ଶେଷ ହେଲା।

## ଜ୍ଞାନମଣ୍ଡଳର ପ୍ରଥମ ଖଣ୍ଡ ଉଦ୍‌ଘାଟନ

୧୯୬୦ ମସିହା ଡିସେମ୍ବର ୨ ତାରିଖରେ ବିନୋଦ କାନୁନ୍‌ଗୋଙ୍କ ପ୍ରଣୀତ 'ଜ୍ଞାନମଣ୍ଡଳ'ର ପ୍ରଥମଖଣ୍ଡ ଉଦ୍‌ଘାଟିତ ହେଲା। ବଲାଇ ପାଲିତଙ୍କ ଯେଉଁ ବାସଭବନରେ ସେ ରହୁଥିଲେ ସେହି ଘରର ଅପ୍ରଶସ୍ତ ଅଗଣାରେ ୧୪୫ ଜଣ ନିମନ୍ତ୍ରିତ ବ୍ୟକ୍ତିଙ୍କ ଉପସ୍ଥିତିରେ ସେତେବେଳର ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବଙ୍କ ଦ୍ୱାରା ଏହି ପୁସ୍ତକଟି ଉଦ୍‌ଘାଟିତ ହୋଇଥିଲା। ଏହି ଉଦ୍‌ଘାଟନ ଉତ୍ସବରେ ଓଡ଼ିଶାର ବିଶିଷ୍ଟ ବୁଦ୍ଧିଜୀବୀ ଓ ଶିକ୍ଷାବିତ୍‌ମାନେ ଉପସ୍ଥିତ ଥିଲେ। ପ୍ରଥମେ ତାଙ୍କ ମାମୁଁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଭାବବିହ୍ୱଳ କଣ୍ଠରେ କହିଥିଲେ ଯେ "ବିନା ଯେତେବେଳେ ପଢ଼ାପଢ଼ି ଛାଡ଼ି ଜେଲ ଯିବାକୁ ବାହାରିଲା ମୁଁ ତାକୁ ଖୁବ୍ ପିଟିଥିଲି। ଆଜି ବିଚାରୁଛି-ସେ ଠିକ୍ କରିଥିଲା ମୁଁ ଭୁଲ କରିଥିଲି। ସେ ମୋ ଭଣଜା । ତା ପ୍ରଶଂସା ମୁଁ କଣ କରିବି?" ଏହି ସଭାରେ ଉଦ୍‌ବୋଧନ ଦେଇ ଡଃ ମାୟାଧର ମାନସିଂହ କହିଥିଲେ ଯେ ଏଇଟି ଜଣେ ବ୍ୟକ୍ତିଙ୍କ କାମ ନୁହେଁ। ଓଡ଼ିଆ ଭାଷାର ପ୍ରଥମ ଏନ୍‌ସାଇକ୍ଲୋପିଡିଆ ଆହୁରି ଭଲ କାଗଜରେ ଭଲ ଭାବରେ ଛପା ହେବା ଉଚିତ ଥିଲା।" ଏହାର ଉତ୍ତର ଦେଇ ଡଃ ହରେକୃଷ୍ଣ ମହତାବ କହିଥିଲେ ଯେ ଆହୁରି ଭଲ କରିବାକୁ ଅପେକ୍ଷା କରି ଆଦୌ ନ କରିବାଟା ବିଜ୍ଞତାର କାମ ନୁହେଁ-ଏହାର ବିଷୟବସ୍ତୁ ଭଲ ହୋଇଛି ବୋଲି ଯଦି ଆମେ ବିଚାରୁଛୁ ତା'ହେଲେ ଏ କାର୍ଯ୍ୟ ଆଗେଇ ଚାଲୁ।

'ଜ୍ଞାନମଣ୍ଡଳ' ଭଲ କାଗଜରେ ଓ ଭଲ ଭାବରେ ଛପା ହେବା ଉଚିତ ଥିଲା ବୋଲି ଡଃ ମାନସିଂହ ଯେଉଁ ସମାଲୋଚନା କରିଥିଲେ ବିନୋଦ ବାବୁ ତାଙ୍କ ସହିତ ଏକମତ ହୋଇଥିଲେ। ସେତେବେଳେ ତାଙ୍କ ନିକଟରେ ଯଥେଷ୍ଟ ଆର୍ଥିକ ସମ୍ବଳ ନ ଥିବାରୁ ଏପରି ହେଲା ବୋଲି ସେ ସ୍ୱୀକାର କରିଥିଲେ। କୌଣସି ବଡ଼ ପ୍ରେସ 'ଜ୍ଞାନମଣ୍ଡଳ' ଛପେଇବାକୁ ରାଜି ହେଲେ ନାହିଁ। ଏକାଧିକ ଛୋଟ

ଛୋଟ ପ୍ରେସ୍‌ରେ ଏହାର ଫର୍ମାଗୁଡ଼ିକୁ ଛପେଇବାକୁ ପଡ଼ିଲା । ସବୁ କାଗଜ ମଧ୍ୟ ଏକାବେଳକେ କିଣି ହେଲା ନାହିଁ । ଗୋଟିଏ ଫର୍ମା ଛପା ହୋଇ ସାରିଲେ ଅନ୍ୟ ଫର୍ମା ଛପାହେଲା । ଯାହା ହେଉ ଦ୍ୱିତୀୟ ଖଣ୍ଡ ଛପାହେଲା ବେଳକୁ ଏ ଅସୁବିଧା ରହିଲା ନାହିଁ । କଟକର ଗୋଟିଏ ବଡ଼ ପ୍ରେସ୍- ରାଷ୍ଟ୍ରଭାଷା ସମବାୟ ପ୍ରେସ ଜ୍ଞାନମଣ୍ଡଳ ଛପେଇ ଦେବାର ଦାୟିତ୍ୱ ଗ୍ରହଣ କଲେ । ସେତେବେଳର ରାଷ୍ଟ୍ରଭାଷା ସମବାୟ ପ୍ରେସର ମ୍ୟାନେଜର ଗୋପୀନାଥ ସାହୁ ବିନୋଦ ବାବୁଙ୍କୁ କହିଥିଲେ ଯେ ''ଜ୍ଞାନମଣ୍ଡଳ ରାଷ୍ଟ୍ରଭାଷାରେ ଛପାହେବ । ଏହା ଏକ ଜାତୀୟ କାମ । ଆପଣ ପରେ ଛପାଖର୍ଚ୍ଚ ଦେବେ ।'' ଜ୍ଞାନମଣ୍ଡଳ ମୁଦ୍ରଣ ଓ ବିକ୍ରି କାର୍ଯ୍ୟରେ ସେତେବେଳେ ରାଷ୍ଟ୍ରଭାଷା ସମବାୟ ପ୍ରେସର କର୍ମଚାରୀମାନେ ଉତ୍ସାହର ସହିତ ସହଯୋଗ କରିଥିଲେ । ଏଥିପାଇଁ ଜ୍ଞାନମଣ୍ଡଳର ଚତୁର୍ଥ ଖଣ୍ଡ ମୁଖବନ୍ଧରେ ବିନୋଦ ବାବୁ ମ୍ୟାନେଜର ଗୋପୀନାଥ ସାହୁ ତଥା ଅନ୍ୟମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରିଛନ୍ତି ।

ବିନୋଦ ବାବୁ କେବଳ 'ଜ୍ଞାନମଣ୍ଡଳ'ର ଲେଖା ଓ ଛପେଇବା ଦାୟିତ୍ୱ ନୁହେଁ, ବିକ୍ରି ଦାୟିତ୍ୱ ମଧ୍ୟ ନିଜେ ବହନ କରିଥିଲେ । ସେତେବେଳେ ତାଙ୍କର ବିଶେଷ ଆର୍ଥିକ ସମ୍ବଳ ନ ଥିଲା । ଗୋଟିଏ ସଂଖ୍ୟା ବିକ୍ରି ହେବାପରେ ସେଇ ଅର୍ଥରେ ଆଉ ଗୋଟିଏ ସଂଖ୍ୟାର ମୁଦ୍ରଣ ହେବ । ତେଣୁ ସେ କେତେକ ବନ୍ଧୁଙ୍କ ସାହାଯ୍ୟରେ ନିଜେ ସାଇକେଲ୍‌ରେ 'ଜ୍ଞାନମଣ୍ଡଳ' ପୁସ୍ତକ ଗୁଡ଼ିକୁ ଧରି ବିକ୍ରି କରିବାକୁ ଯାଆନ୍ତି । ସେତେବେଳେ ଶିକ୍ଷିତ ଓ ବୁଦ୍ଧିଜୀବୀଙ୍କ ଭିତରୁ ବହୁ କମ ଲୋକଙ୍କର 'ଏନସାଇକ୍ଲୋପିଡ଼ିଆ' ବିଷୟରେ ଧାରଣା ଥିଲା । ତେଣୁ ଜ୍ଞାନମଣ୍ଡଳ କିଣିବାକୁ ଶିକ୍ଷିତ ଲୋକଙ୍କର ମଧ୍ୟ ଆଗ୍ରହ ନ ଥିଲା । କେନ୍ଦ୍ର ସରକାର ବା ରାଜ୍ୟ ସରକାରଙ୍କ ଠାରୁ ମଧ୍ୟ କିଛି ସାହାଯ୍ୟ ମିଳି ନ ଥିଲା । ଏହି ସମୟରେ ତାଙ୍କୁ ସବୁ କାମ ଏକୁଟିଆ କରିବାକୁ ହେଉଥିଲା । ଏଥିରେ ଯେ କୌଣସି ଲେଖକ ବା ପ୍ରକାଶକ ହତାଶ ହୋଇ ପଡ଼ିଥାନ୍ତେ । ମାତ୍ର ବିନୋଦ କାନୁନ୍‌ଗୋ ହତାଶ ହୋଇ ଏ କାମ ଛାଡ଼ି ଦେଇ ନ ଥିଲେ । ବରଂ ଏହା ତାଙ୍କ ଜ୍ଞାନ ଓ ଶକ୍ତି ପ୍ରତି ଏକ ଆହ୍ୱାନ ବୋଲି ଧରି ନେଇ ଅଧିକ ଉତ୍ସାହରେ ସେ ଏହା ସଂପାଦନା କରି ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଜାତିପାଇଁ ଅମର କୀର୍ତ୍ତି ରଖିଦେଇଗଲେ ।

## ଜ୍ଞାନମଣ୍ଡଳ ପ୍ରଣୟନରେ ପରବର୍ତ୍ତୀ ପରିବର୍ତ୍ତନ

ଜ୍ଞାନମଣ୍ଡଳର ପଞ୍ଚଦଶ ଖଣ୍ଡ ପ୍ରକାଶ ପାଇବା ପର୍ଯ୍ୟନ୍ତ ସେ ବର୍ଣ୍ଣମାଳା ଅନୁସାରେ ବିଷୟଗୁଡ଼ିକ ସଜାଇ ରଖିଥିଲେ । ଷୋଡ଼ଶ ଖଣ୍ଡ ବେଳକୁ ବୁଦ୍ଧିଜୀବୀ ପାଠକମାନଙ୍କର ଅନୁରୋଧ କ୍ରମେ କିଛି ପରିବର୍ତ୍ତନ କରିଥିଲେ । ବିଜ୍ଞ ପାଠକମାନେ ଅନୁରୋଧ କଲେ ଯେ ଖଣ୍ଡେ ବା ଦୁଇ ଖଣ୍ଡ ଭିତରେ ପୃଥିବୀର ସବୁ ଦେଶ ସଂବନ୍ଧୀୟ ତଥ୍ୟ ସନ୍ନିବେଶିତ କରି ଦିଆଯାଉ ।

ପାଠକମାନଙ୍କ ଅନୁରୋଧ ରକ୍ଷାକରି 'ଜ୍ଞାନମଣ୍ଡଳ'ର ଷୋଡ଼ଶ ଓ ସପ୍ତଦଶ ଖଣ୍ଡରେ ସବୁ ଦେଶର ପରିଚୟ ସେ ରଖି ଦେଇଥିଲେ। ଅଷ୍ଟାଦଶ ଖଣ୍ଡ ବେଳକୁ ପାଠକମାନେ ଆଉ ଏକ ପରିବର୍ତ୍ତନପାଇଁ ପ୍ରସ୍ତାବ ଦେଲେ। ନୂତନ ସୂଚନା ମତେ ଯେଉଁ ସବୁ ବିଷୟରେ ସଂକ୍ଷେପରେ ଜାଣିଲେ ମଧ୍ୟ ଚଳିଯିବ ସେ ଗୁଡ଼ିକ କେତେ ଖଣ୍ଡରେ ରଖିଦେଲେ ଏବଂ ସ୍ୱତନ୍ତ୍ର ବିଷୟ ଗୁଡ଼ିକୁ ଅଲଗା ଖଣ୍ଡରେ ରଖାଗଲା। 'ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକା'ର ପଞ୍ଚଦଶ ଖଣ୍ଡରେ ଏହିପରି କରାଯାଇଥିଲା। ଏହାର ୯ଖଣ୍ଡ ଭିତରେ ଯେଉଁ ସବୁ ବିଷୟ ସଂକ୍ଷେପରେ ଜାଣିଲେ ଚଳିଯିବ ତାହା ଦିଆ ଯାଇଥିଲା। ଅନ୍ୟ ଯେଉଁସବୁ ବିଷୟରେ ଅଧିକ ଜାଣିବା ଦରକାର ସେ ଗୁଡ଼ିକ ସ୍ୱତନ୍ତ୍ର ପ୍ରବନ୍ଧ ଆକାରରେ ୧୯ ଖଣ୍ଡରେ ଦିଆ ଗଲା। ମାତ୍ର 'ଜ୍ଞାନମଣ୍ଡଳ'ରେ ଏହାର ଏକ ମଝିମଝିକିଆ ପନ୍ଥା ଅନୁସରଣ କରାଯାଇଛି। ବର୍ଣ୍ଣମାଳା ଅନୁସାରେ ବିଷୟ ଗୁଡ଼ିକ ରହିବା ସଙ୍ଗେ ସଙ୍ଗେ କେତେଗୁଡ଼ିଏ ମୌଳିକ ଜ୍ଞାତବ୍ୟ ବିଷୟ ସ୍ୱତନ୍ତ୍ର ପ୍ରବନ୍ଧ ଆକାରରେ ଦିଆ ଯାଇଥିଲା। ଫଳରେ କେତେକ ସାଧାରଣ ଜ୍ଞାତବ୍ୟ ବିଷୟ ଗୋଟିଏ ଖଣ୍ଡରୁ ଅନ୍ୟ ଖଣ୍ଡକୁ ଚାଲିଯାଇଛି।

'ଜ୍ଞାନମଣ୍ଡଳ'ର ପଞ୍ଚଦଶ ଖଣ୍ଡ ପରେ ଏହି ପରିବର୍ତ୍ତନ ଫଳରେ ବର୍ଣ୍ଣମାଳା ଅନୁସାରେ ସମସ୍ତ ସାଧାରଣ ଜ୍ଞାତବ୍ୟ ବିଷୟ ରହିବା ସଙ୍ଗେ ସଙ୍ଗେ ମୌଳିକ ବିଷୟଗୁଡ଼ିକ ସ୍ୱତନ୍ତ୍ର ପ୍ରବନ୍ଧ ଆକାରରେ ରହିଯିବା ଫଳରେ ଜ୍ଞାନମଣ୍ଡଳ ଶେଷ ହେଲାବେଳକୁ ବର୍ଣ୍ଣମାଳା ଅନୁସାରେ ସମସ୍ତ ସାଧାରଣ ଜ୍ଞାତବ୍ୟ ବିଷୟ ଶେଷ ହୋଇଥିବ ଏବଂ ସଙ୍ଗେ ସଙ୍ଗେ ବହୁ ସ୍ୱତନ୍ତ୍ର ପ୍ରବନ୍ଧ ସ୍ଥାନ ପାଇ ସାରିଥିବ। ଏହା ଫଳରେ ଜ୍ଞାନମଣ୍ଡଳ ସହାୟକ ପୁସ୍ତକ ରୂପେ ତଥା ଶିକ୍ଷାର ସାଧନ ରୂପେ କାର୍ଯ୍ୟ କରିବ। କେବଳ ତଥ୍ୟ ଆହରଣକୁ ଶିକ୍ଷା ବୋଲି କୁହା ଯାଇପାରିବ ନାହିଁ। ଶିକ୍ଷାପାଇଁ ତଥ୍ୟ ଆହରଣ ନିଶ୍ଚିତ ଭାବରେ ଦରକାର। ମାତ୍ର ଜଣେ ଯେତେ ଅଧିକ ତଥ୍ୟର ଅଧିକାରୀ ହେଲେ ମଧ୍ୟ ଶିକ୍ଷାପାଇଁ ସେହି ତଥ୍ୟ ଭିତରୁ ଆବଶ୍ୟକୀୟ ତଥ୍ୟ ବାହାର କରି ସେଗୁଡ଼ିକୁ ଉପଯୋଗ କରିବାପାଇଁ ଯେଉଁ ଧୀଶକ୍ତି ବା ଗ୍ରହଣ ଶକ୍ତି ଆବଶ୍ୟକ, ତାହା କେବଳ ତଥ୍ୟ ଭିତରୁ ମିଳିବ ନାହିଁ। ଜ୍ଞାନମଣ୍ଡଳ ଏହି ପଦ୍ଧତି ଅନୁସରଣ ନ କରିଥିଲେ ଏହା କେବଳ ଗୋଟିଏ ତଥ୍ୟମୂଳକ ପୁସ୍ତକ ହୋଇ ରହିଯାଇଥାନ୍ତା। ଶିକ୍ଷାର ସାଧନ ହୋଇପାରି ନ ଥାନ୍ତା।

## ଜ୍ଞାନମଣ୍ଡଳପାଇଁ ଋଣରେ ବୁଡ଼ିଲେ

୧୯୬୦ ମସିହାରେ ଜ୍ଞାନମଣ୍ଡଳର ପ୍ରଥମ ଖଣ୍ଡ ପ୍ରକାଶ ପାଇବାପରେ ସେ ଆଉ ରେଭେନ୍ସା କଲେଜର କନିକା ଲାଇବ୍ରେରୀକୁ ନ ଯାଇ କଟକର ନିଜ ଘରେ ରହି ଜ୍ଞାନମଣ୍ଡଳପାଇଁ ଲେଖିବା, ଛାପିବା ଓ ବିକ୍ରି କରିବା କାର୍ଯ୍ୟ ପରିଚାଳନା କଲେ। ସେତେବେଳକୁ ସେ କେନ୍ଦ୍ର ସରକାର ବା ରାଜ୍ୟ ସରକାରଙ୍କଠାରୁ ବିଶେଷ

କିଛି ସାହାଯ୍ୟ ପାଇ ନ ଥିଲେ। ସେ ଆଠ ଦଶ ଖଣ୍ଡ ଦୈନିକ ପତ୍ରିକା, ବହୁ ସାମୟିକ ପତ୍ରିକା ଓ ତିନୋଟି ବଡ଼ ବଡ଼ ଅଭିଧାନ କିଣିଥିଲେ। ଏଥିପାଇଁ ସେ କାବୁଲିବାଲାଠାରୁ ଶତକଡ଼ା ୧୨୦ ଟଙ୍କା ସୁଧରେ୍ ଏବଂ କେତେକ ପରିଚିତ ବନ୍ଧୁଙ୍କଠାରୁ ମାସିକ ଶତକଡ଼ା ୬ ଟଙ୍କା ସୁଧରେ ଟଙ୍କା ଋଣ କରି ଏସବୁ ବହି କିଣିଥିଲେ। ଜଣେ ବନ୍ଧୁଙ୍କ ସାମନାରେ 'Great Books' (ମହାନ ଗ୍ରନ୍ଥମାଳା) ପୁସ୍ତକପାଇଁ ଅର୍ଡ଼ର ଦେଉଥିବାବେଳେ ଯେତେବେଳେ ବନ୍ଧୁ କହିଲେ ଯେ 'ଋଣରେ ତ ବୁଡ଼ି ସାରିଲଣି। ଆଉ କାହିଁକି ଏହା କରୁଛ ?' ଏହାର ଉତ୍ତରରେ ସେ ପରିହାସ ଛଳରେ ତାଙ୍କୁ କହିଥିଲେ- 'ଯଦି ବୁଡ଼ି ମରିବା କଥା ହେବ ତା'ହେଲେ ପ୍ରଶାନ୍ତ ମହାସାଗରରେ କାହିଁକି ବୁଡ଼ି ନ ମରିବି ?'

## ଜ୍ଞାନମଣ୍ଡଳରେ ''ମହାନ୍‌ଗ୍ରନ୍ଥମାଳା''ର ଉପଯୋଗ

ଋଣଗ୍ରସ୍ତ ହୋଇ ଯେଉଁ ଗ୍ରେଟ୍ ବୁକସ୍ ବା ମହାନ୍ ଗ୍ରନ୍ଥମାଳା କିଣିଥିବା କଥା ଉପରେ କୁହାଯାଇଛି ସେହି ମହାନ୍ ଗ୍ରନ୍ଥକୁ ସେ 'ଜ୍ଞାନମଣ୍ଡଳ'ରେ ଉପଯୋଗ କରିଥିଲେ। ଏହି ମହାନ୍ ପୁସ୍ତକମାଳାରେ ୫୪ ଖଣ୍ଡ ଉପାଦେୟ ପୁସ୍ତକ ରହିଛି। ୭୪ ଜଣ ବିଦ୍ୱାନ ଓ ବୈଜ୍ଞାନିକଙ୍କ ଦ୍ୱାରା ପ୍ରଣୀତ ୪୪୩ ଖଣ୍ଡ ବଛା ବଛା ପୁସ୍ତକକୁ ଏହିଭଳି ୫୪ ଖଣ୍ଡରେ ବିଭକ୍ତ କରି ଦିଆଯାଇଛି। ଗତ ତିନିହଜାର ବର୍ଷ ଭିତରେ ପାଶ୍ଚାତ୍ୟ ଜଗତରେ ମନୀଷୀମାନଙ୍କ ଚିନ୍ତାଧାରାକୁ ଏହି ପୁସ୍ତକରେ ସଜ୍ଜିତ କରି ରଖାଯାଇଛି। ବିଷୟ ବସ୍ତୁର ନାମ ରଖାଯାଇଛି- Great Conversation ବା ମହାନ ସଂଳାପ। ପାଶ୍ଚାତ୍ୟ ଚିନ୍ତାଧାରାରେ ଯେଉଁ ସବୁ ମୌଳିକ ସମସ୍ୟା ରହିଛି ଏହି ଗ୍ରନ୍ଥମାଳା ସେ ବିଷୟରେ ଆଲୋକପାତ କରିଛି। ଏହି ଗ୍ରନ୍ଥମାଳାରେ ଯେଉଁସବୁ ସଂଳାପ ସଂପାଦକମାନେ ଲିପିବଦ୍ଧ କରିଛନ୍ତି ତା ଭିତରେ ବିଜ୍ଞାନ ଅନ୍ୟତମ। ସଂପାଦକମାନେ ମତପ୍ରକାଶ କରିଛନ୍ତି ଯେ ଯେଉଁମାନେ ବିଜ୍ଞାନ ପୁସ୍ତକ ଅଧ୍ୟୟନ କରି ନାହାନ୍ତି ସେମାନେ ଲିବରାଲ ଏଜୁକେସନ ବା ସମନ୍ୱିତ ଶିକ୍ଷା ପାଇ ନାହାନ୍ତି। ଆଧୁନିକ ଦୁନିଆକୁ ବୁଝିବାକୁ ହେଲେ ବିଜ୍ଞାନ ପୁସ୍ତକଗୁଡ଼ିକ ଅଧ୍ୟୟନ କରିବା ଉଚିତ। ବିଜ୍ଞାନର ଇତିହାସ ଜାଣିବାକୁ ହେଲେ ପୁରାତନ ଯୁଗର ବୈଜ୍ଞାନିକ ଚିନ୍ତାଧାରା ସହିତ ପରିଚିତ ହେବାକୁ ପଡ଼ିବ।

ଏହି ଗ୍ରନ୍ଥମାଳାର ସଂପାଦକମାନେ ଏକ ସ୍ୱତନ୍ତ୍ର ମୁଖବନ୍ଧ ଲେଖି ପାଠକମାନଙ୍କୁ ପରାମର୍ଶ ଦେଇଛନ୍ତି ଯେ ଗ୍ରନ୍ଥମାଳାର ୪୪୩ ଖଣ୍ଡ ଯାକ ପୁସ୍ତକ ନ ପଢ଼ି ମଧ୍ୟ ଦୁଇ ଖଣ୍ଡରେ ବିଭକ୍ତ ଏହି ମୁଖବନ୍ଧକୁ ଯତ୍ନର ସହିତ ପଢ଼ିଦିଆଯାଇପାରେ। ଏହି ଗ୍ରନ୍ଥମାଳାର ସମସ୍ତ ପୁସ୍ତକକୁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ପୁସ୍ତକ ବୋଲି ଧରିବାକୁ ହେବ। ପାଶ୍ଚାତ୍ୟ ପରମ୍ପରାକୁ ଏହିସବୁ ପୁସ୍ତକ ମିଳିତ ଭାବରେ ଜୀବନ ଓ ଆଲୋକ ପ୍ରଦାନ କରିଛି। ପ୍ରତ୍ୟେକ ପୁସ୍ତକର ଅନ୍ୟ ପୁସ୍ତକ ସହିତ କିଛି ନା କିଛି ସଂପର୍କ

ରହିଛି। ସମଗ୍ର ଭାବରେ ଏହା ଏକ ସେଟ୍ ଏନ୍‌ସାଇକ୍ଲୋପିଡ଼ିଆ ବୋଲି କୁହାଯାଇପାରେ। ଏହି ଦୁଇ ଖଣ୍ଡି ମୁଖବନ୍ଧ ପୁସ୍ତକରେ ସଂପାଦକମଣ୍ଡଳି ଯେଉଁ ୧୦୨ଟି ଆଇଡିଆ ବା ଚିନ୍ତାର ବିଶ୍ଳେଷଣ କରିଛନ୍ତି ସେଥିଭିତରୁ ଗୁରୁତ୍ୱପୂର୍ଣ୍ଣ ବିଷୟଗୁଡ଼ିକ ବିନୋଦ ବାବୁ ଜ୍ଞାନମଣ୍ଡଳର ବିଭିନ୍ନ ଖଣ୍ଡରେ ନିଜ ଭାଷାରେ ବିଶ୍ଳେଷଣ କରିଛନ୍ତି। ଏହି ବିଷୟ ଗୁଡ଼ିକ ହେଲା ମାନବ, ବସ୍ତୁ, ଗଣିତ, ସ୍ମୃତି, କଳ୍ପନା, ଅଧ୍ୟାତ୍ମ୍ୟ, ବିଦ୍ୟା, ମନ, ପ୍ରକୃତି, ଆବଶ୍ୟକତା, ଏକ ଓ ବହୁତ, ମତ, ବିରୋଧ, ଦର୍ଶନ, ପଦାର୍ଥ ବିଦ୍ୟା, ଯନ୍ତ୍ରଣା, ଆନନ୍ଦ, କବିତା, ନୀତି, ବୃଦ୍ଧି, ଭବିଷ୍ୟତ ବାଣୀ, ବିଜ୍ଞତା, ଶାସ୍ତି, ଗୁଣ, ପରିମାଣ, ହେତୁବାଦ, ସଂପର୍କ, ଧର୍ମ, ବିପ୍ଲବ, ବାଗ୍ମିତା, ବିଜ୍ଞାନ, ସଂପର୍କ, ଧର୍ମ, ବିପ୍ଲବ, ଇନ୍ଦ୍ରିୟ, ପାପ, ଆତ୍ମା, ରାଷ୍ଟ୍ର, ମହାଶୂନ୍ୟ, କାଳ, ସତ୍ୟ, ପୁଣ୍ୟ, ଯୁଦ୍ଧ ଓ ଶାନ୍ତି, ସୌନ୍ଦର୍ଯ୍ୟ, କାରଣ, ପରିବର୍ତ୍ତନ, ଅଭିଜ୍ଞତା, ପରିବାର, ଅଭ୍ୟାସ, ଇତିହାସ, ସମ୍ମାନ, ରୂପ, ଭଗବାନ, ଚିନ୍ତା, ବିଚାର, ବୁଦ୍ଧି, ନ୍ୟାୟ, ଜ୍ଞାନ, ଶ୍ରମ, ଭାଷା, ଆଇନ, ମୁକ୍ତି, ଜୀବନ, ନ୍ୟାୟ। ବିନୋଦ ବାବୁ ଜ୍ଞାନମଣ୍ଡଳରେ ଏହି ବିଷୟଗୁଡ଼ିକୁ ବିଶ୍ଳେଷଣ କରି ଯାହା ଲେଖିଛନ୍ତି ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ତାହା ଏକ ଅନବଦ୍ୟ ଅବଦାନ।

## "୩୬୫ ଦିନ" ଗ୍ରନ୍ଥମାଳା

ଜ୍ଞାନ-ବିଜ୍ଞାନର ସମସ୍ତ ବିଷୟକୁ ସହଜ ଓ ସରଳ ଭାଷାରେ ସୁଖପାଠ୍ୟ କରି ଲୋକଙ୍କ ପାଖରେ ପହଞ୍ଚାଇବାପାଇଁ ବିନୋଦ କାନୁନ୍‌ଗୋ "ଜ୍ଞାନମଣ୍ଡଳ" ଲେଖି ଚାଲିଥିଲାବେଳେ ଅନୁଭବ କରିଥିଲେ ଯେ ସମସ୍ତ ଜ୍ଞାନମଣ୍ଡଳ ସେଟ୍‌ଟି ସବୁ ଶ୍ରେଣୀର ଲୋକଙ୍କ ପାଖରେ ପହଞ୍ଚିବା ସମ୍ଭବ ନୁହେଁ। ସେଥିପାଇଁ ସେ ଜ୍ଞାନବିଜ୍ଞାନର ସମସ୍ତ ବିଷୟ ସବୁ ଶ୍ରେଣୀର ଲୋକଙ୍କ ପାଖରେ ବିଶେଷ ଭାବରେ ଛାତ୍ର ଛାତ୍ରୀ ଓ ଅଧାପାଠୁଆ ଲୋକଙ୍କ ପାଖରେ ପହଞ୍ଚାଇବାପାଇଁ ଏକ ଅଭିନବ ପରିକଳ୍ପନା କରିଥିଲେ। ଏହାର ନାମ ଦେଇଥିଲେ "୩୬୫ଦିନ ପୁସ୍ତକମାଳା"। ଏପରି ନାମକରଣର ଉଦ୍ଦେଶ୍ୟ ହେଲା ବର୍ଷକ ୩୬୫ ଦିନ ଅତୀତର ଗୋଟିଏ ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଘଟଣାର ସ୍ମୃତି ବାର୍ଷିକୀ। ଏହି ପୁସ୍ତକମାଳାର ପୁସ୍ତକଗୁଡ଼ିକ ଲୋକଙ୍କ ପାଖରେ ବିଶେଷ ଭାବରେ ଛାତ୍ରମାନଙ୍କ ନିକଟରେ ପହଞ୍ଚିଲେ ସେମାନେ ଯେଉଁ ସବୁ ସ୍ମରଣୀୟ ଘଟଣା ଘଟିଥିଲା ତାହା ଜାଣିପାରିବେ। ବର୍ଷ ଶେଷ ହେଲାବେଳକୁ ପିଲାମାନେ ୩୬୫ଟି ଉଲ୍ଲେଖଯୋଗ୍ୟ ଘଟଣା ସହିତ ପରିଚିତ ହୋଇଯିବେ।

"୩୬୫ଦିନ ଗ୍ରନ୍ଥମାଳା" ଭିତରୁ ୪୨ ଖଣ୍ଡ ବହି ସେ ନିଜେ ଲେଖିଯାଇଛନ୍ତି। ଏଥିଭିତରୁ ଅଧିକାଂଶ ହେଲା ବିଜ୍ଞାନ ସଂବନ୍ଧୀୟ। ଆଧୁନିକ ବୈଜ୍ଞାନିକ ଆବିଷ୍କାର ଗୁଡ଼ିକୁ ଜନସାଧାରଣଙ୍କ ନିକଟରେ ପହଞ୍ଚାଇବା ନିମନ୍ତେ ସେ କଠିନ ପରିଶ୍ରମ କରିଥିଲେ। ସେ ବିଜ୍ଞାନର ବିଭିନ୍ନ ବିଭାଗ ସଂବନ୍ଧରେ ବୈଜ୍ଞାନିକମାନଙ୍କ ନିକଟରୁ ବୁଝି ଜ୍ଞାନ

ଲାଭ କରିଥିଲେ। ତାଙ୍କର ମତ ଥିଲା ଜଣେ ବିଜ୍ଞାନର ପ୍ରଗତି ବିଷୟରେ ଯେ ସବୁ କଥା ଜାଣିବ ଏହା ନୁହେଁ, କିନ୍ତୁ ବିଜ୍ଞାନର ସବୁ ଦିଗ ବିଷୟରେ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିଙ୍କର ମୌଳିକ ଧାରଣା ଥିବା ଆବଶ୍ୟକ। ସେ ଏହି ଗ୍ରନ୍ଥମାଳାରେ ପରମାଣୁ, ଆଲୋକ ସଂଶ୍ଳେଷଣ, ରକ୍ତ ସଂଚାଳନ, ମସ୍ତିଷ, ସୂର୍ଯ୍ୟ, ଉର୍ଜା, ମାଂସପେଶୀ, ଅସ୍ଥି, ଜୀବକୋଷ, ବିବର୍ତ୍ତନବାଦ, ହଜମକ୍ରିୟା, ପୁଷ୍ଟିକର ଖାଦ୍ୟ, ମୁଦ୍ରା, ପ୍ରସ୍ତର ଯୁଗ, ଅଗ୍ନି, ଦାନ୍ତ ଓ ମହାକାଶ ଯାତ୍ରା ପ୍ରଭୃତି ବୈଜ୍ଞାନିକ ବିଷୟଗୁଡ଼ିକୁ ତାଙ୍କ ସରଳ ଓ ଚିତ୍ତାକର୍ଷକ ଭାଷାରେ ଗଳ୍ପ ଆକାରରେ ଲେଖିଛନ୍ତି। ଏହି ବିଷୟଗୁଡ଼ିକ ମଧ୍ୟ ସ୍ୱତନ୍ତ୍ର ପ୍ରବନ୍ଧ ଆକାରରେ ଜ୍ଞାନମଣ୍ଡଳର ବିଭିନ୍ନ ଖଣ୍ଡରେ ସନ୍ନିବେଶିତ ହୋଇଛି। ଏହି ବୈଜ୍ଞାନିକ ବିଷୟଗୁଡ଼ିକ ଛଡ଼ା କୃଷି, ସ୍ୱାଧୀନତା ସଂଗ୍ରାମ, ବର୍ଣ୍ଣମାଳା ତଥା କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନ ସେ ପ୍ରଣୟନ କରିଥିଲେ। ଏହି ସବୁ ପୁସ୍ତକ ଲୋକପ୍ରିୟ ହୋଇଥିଲା। ବିଶେଷଭାବରେ ଛାତ୍ରମାନଙ୍କ ଦ୍ୱାରା ଆଦୃତ ହୋଇଥିଲା। ଏହି ପୁସ୍ତକଗୁଡ଼ିକର ମୂଲ୍ୟ ମୋଟେ ଅଢ଼େଇ ଟଙ୍କା ରଖାଯାଇଥିଲା। ଅଧିକ ଲୋକଙ୍କ ନିକଟରେ ଏହା ଯେପରି ପହଞ୍ଚି ପାରିବ ସେହି ଉଦ୍ଦେଶ୍ୟରେ ଏହା ସେ କରିଥିଲେ। ପାଠ୍ୟପୁସ୍ତକର ବିଷୟ ବୁଝିବା ଦିଗରେ ଏହି କ୍ଷୁଦ୍ର ପୁସ୍ତକଗୁଡ଼ିକ ସାହାଯ୍ୟ କରିଥିଲା।

## ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଇତିହାସ ପ୍ରଣୟନ

ବିନୋଦ କାନୁନ୍‌ଗୋ ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟରେ ଦଶମ ଶ୍ରେଣୀରୁ ପଢ଼ାଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ ଏବଂ ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ ସକ୍ରିୟ ଅଂଶ ଗ୍ରହଣ କରି କାରାବରଣ କରିଥିଲେ। ତେଣୁ ସ୍ୱାଧୀନତା ସଂଗ୍ରାମ ସଂପର୍କରେ ତାଙ୍କର ପ୍ରତ୍ୟକ୍ଷ ଅନୁଭୂତି ଥିଲା। ସେ ଆଶା କରିଥିଲେ ଯେ ସ୍ୱାଧୀନତା ପରେ ସରକାରଙ୍କ ଉଦ୍ୟମରେ ସ୍ୱାଧୀନତା ସଂଗ୍ରାମର ପୂର୍ଣ୍ଣାଙ୍ଗ ଇତିହାସ ଲେଖାହେବ ଏବଂ ସେଥିରେ ଓଡ଼ିଶାର ସାଧାରଣ ଲୋକ ସକ୍ରିୟ ଅଂଶ ଗ୍ରହଣ କରି ଯେପରି ତ୍ୟାଗ କରିଛନ୍ତି ଓ ଦୁଃଖ କଷ୍ଟ ବରଣ କରିଛନ୍ତି ତାର ବିସ୍ତୃତ ବିବରଣୀ ଲିପିବଦ୍ଧ ହେବ। ମାତ୍ର ତାହା ହେଲା ନାହିଁ। ସରକାରୀ ଉଦ୍ୟମରେ ଯେଉଁ କେତେଖଣ୍ଡି କ୍ଷୁଦ୍ର ପୁସ୍ତକ ସ୍ୱାଧୀନତା ସଂଗ୍ରାମର ଇତିହାସ ନାଁରେ ପ୍ରକାଶ ପାଇଲା ତାହା ପୋଲିସ୍ ରିପୋର୍ଟ ଛଡ଼ା ଅନ୍ୟ କିଛି ନୁହେଁ। ତେଣୁ ସେ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମକୁ ତିନି ଭାଗରେ ବିଭକ୍ତ କରି ତିନି ଖଣ୍ଡି ପୁସ୍ତକରେ ପ୍ରଣୟନ କରିଥିଲେ। ସେଥିଭିତରୁ ସ୍ୱାଧୀନତା ସଂଗ୍ରାମର ପ୍ରଥମ ପର୍ଯ୍ୟାୟକୁ ସେ ''ସୂତା ଖିଅରେ ସ୍ୱରାଜ ଝୁଲୁଛି'' ବୋଲି ନାମ ଦେଇଥିଲେ। ଦ୍ୱିତୀୟ ପର୍ଯ୍ୟାୟର ସଂଗ୍ରାମକୁ ''ମୁଠାଏ ଲୁଣ ଗୋଟାଏ ସାମ୍ରାଜ୍ୟ'' ଏବଂ ଶେଷ ସଂଗ୍ରାମକୁ ''ବାନ୍ଧ ତୁମ ପେଡ଼ିପୁଟୁଳା'' ବୋଲି ନାମ ଦେଇଥିଲେ। ପ୍ରଥମ ଦୁଇଟି ପୁସ୍ତକ ପ୍ରକାଶ ପାଇଛି।

ଏହାଛଡ଼ା ସେ ବ୍ରହ୍ମପୁର ଜେଲ୍ ଭିତରେ ଥିଲାବେଳେ ନିଜେ ସ୍ୱାଧୀନତା ସଂଗ୍ରାମୀଙ୍କୁ ଭେଟି ସେମାନଙ୍କଠାରୁ ବିବରଣୀ ସଂଗ୍ରହ କରିଥିଲେ। ପରେ ସେ ଗୋଟିଏ ଫର୍ମ ଛପାଇ ତାକୁ ସ୍ୱାଧୀନତା ସଂଗ୍ରାମୀମାନଙ୍କ ନିକଟକୁ ପଠାଇ ସେମାନଙ୍କଠାରୁ ତଥ୍ୟ ସଂଗ୍ରହ କରିଥିଲେ। ସେଥିରେ ମଧ ସନ୍ତୁଷ୍ଟ ନ ହୋଇ ନିଜେ ବହୁ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀଙ୍କ ନିକଟକୁ ଯାଇ ତାଙ୍କଠାରୁ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ସଂଗ୍ରହ କରିଥିଲେ ଓ ସେମାନଙ୍କ ଫଟୋ ଉଠାଇ ଆଣିବାର ବ୍ୟବସ୍ଥା କରିଥିଲେ। ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ପ୍ରତ୍ୟକ୍ଷଦର୍ଶୀ ଓ ପୂର୍ଣ୍ଣାଙ୍ଗ ବିବରଣୀ ସଂକଳନ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା।

## ଇତିହାସର 'ଡାଏରୀ'

ସ୍ୱାଧୀନତା ସଂଗ୍ରାମର ଇତିହାସ ବୁଲିବୁଲି ସଂଗ୍ରହ କରୁଥିବାବେଳେ ତାଙ୍କର ଗୋଟିଏ ନୂତନ ଶିକ୍ଷା ହୋଇଥିଲା। ସେତେବେଳେ ସେ ଉପଲବ୍ଧି କରିଥିଲେ ଯେ ଓଡ଼ିଶାରେ ବିଜ୍ଞାନସମ୍ମତ ଉପାୟରେ ଇତିହାସ ଲେଖିବାର ପରମ୍ପରା ସୃଷ୍ଟି ହୋଇ ନାହିଁ। ବିଖଣ୍ଡିତ ଓ ଅସମ୍ପୂର୍ଣ୍ଣ ଭାବରେ ସବୁ ଲେଖା ଯାଇଛି। ଇତିହାସର ଦୈନନ୍ଦିନ ଘଟଣାବଳୀକୁ ବିଶ୍ଳେଷଣ କରି ଲିପିବଦ୍ଧ କରିବାପାଇଁ ସେ ଉଦ୍ୟମ କରିଥିଲେ। ଏହି ବିବରଣୀଗୁଡ଼ିକ କେବଳ 'ରେକର୍ଡ଼' ନ ହୋଇ ଯେପରି ଇତିହାସ ହେବ ଏହା ତାଙ୍କର ଉଦ୍ଦେଶ୍ୟ ଥିଲା। ତାଙ୍କ ପକ୍ଷରେ ଏ କଥା କରିବା ସହଜ ହୋଇଥିଲା। କାରଣ ସେ ପ୍ରତିଦିନ ୧୦ ଟିରୁ ଅଧିକ ଦୈନିକ ପତ୍ରିକା ତଥା ବହୁ ସଂଖ୍ୟକ ସାମୟିକ ପତ୍ରିକା କିଣି ପଢୁଥିଲେ। ୧୯୮୭ ମସିହାଠାରୁ ସେ ଏହି ଡାଏରୀ ଲେଖିବାକୁ ଆରମ୍ଭ କରିଥିଲେ। ଏହାକୁ ସେ ନାମ ଦେଇଥିଲେ 'ଇତିହାସର ଡାଏରୀ' ସେ ସଂପୂର୍ଣ୍ଣ ନିରପେକ୍ଷ ଭାବରେ ଘଟଣାବଳୀକୁ ବିଶ୍ଳେଷଣ କରି ଲିପିବଦ୍ଧ କରିଥିଲେ।

## ଗାନ୍ଧିଜୀଙ୍କଠାରୁ ତାଙ୍କର ଦୁଇଟି ମହାନ୍ ଶିକ୍ଷା

ବିନୋଦ କାନୁନ୍‌ଗୋ ମହାତ୍ମା ଗାନ୍ଧିଙ୍କ ଆହ୍ୱାନରେ ହାଇସ୍କୁଲରୁ ପଢ଼ା ନ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ ଓ ଗାନ୍ଧିଜୀଙ୍କ ନୀତି ଓ ଆଦର୍ଶ ଅନୁସରଣ କରି ତାଙ୍କ ଜୀବନ ଗଢ଼ିଥିଲେ। ଗାନ୍ଧିଜୀ ମାଟିଭିତରୁ ଯେଉଁମାନଙ୍କୁ ମଣିଷ କରି ଗଢ଼ିଥିଲେ ତାଙ୍କ ଭିତରୁ ସେ ଜଣେ ବୋଲି ବିନୋଦ ବାବୁ ମତ ପ୍ରକାଶ କରିଛନ୍ତି। ସେ ୧୯୩୪ ମସିହାରେ ଗାନ୍ଧିଜୀଙ୍କ ସହିତ ଓଡ଼ିଶାରେ ହରିଜନ ଯାତ୍ରାବେଳେ ରହି ତାଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସିଥିଲେ। ପରେ କେତେଥର ମଧ୍ୟ ସେ ଗାନ୍ଧିଜୀଙ୍କ ନିକଟ ସଂପର୍କରେ ଆସିଥିଲେ। ସେ ''ଜ୍ଞାନମଣ୍ଡଳ'' ସଂପାଦନା କଲାବେଳେ କେନ୍ଦ୍ର ସରକାରଙ୍କ ଦ୍ୱାରା ସଂପାଦିତ Collected Works of Mahatma

Gandhi ଗ୍ରନ୍ଥଗୁଡ଼ିକୁ କଣି ଯତ୍ନର ସହିତ ଅଧ୍ୟୟନ ଓ ମନନ କଲେ। ଗାନ୍ଧିଜୀଙ୍କ ଦୁଇଟି ନୀତିକୁ ତାଙ୍କର ମାନବ ଜାତିକୁ ଶ୍ରେଷ୍ଠ ଅବଦାନ ବୋଲି ସେ ବର୍ଣ୍ଣନା କରିଛନ୍ତି। ଗୋଟିଏ ହେଲା- ସବଳର ଅହିଂସା, ଆଉ ଗୋଟିଏ ହେଲା- ଦାରିଦ୍ର୍ୟର ସୌନ୍ଦର୍ଯ୍ୟ। ଏ ଦୁଇଟିକୁ ସେ ଦୁଇଟି ମନ୍ତ୍ର ବୋଲି କହିଛନ୍ତି।

## ସବଳର ଅହିଂସା

ଅହିଂସା ଶବ୍ଦଟି ଅତି ପୁରାତନ। ପ୍ରାଚୀନ ଭାରତରେ ମୁନିଋଷିମାନେ ଅହିଂସା ନୀତି ଉଦ୍‌ଭାବନ କରି ବ୍ୟକ୍ତିଗତ ଜୀବନରେ ତାହା ପ୍ରୟୋଗ କରିଥିଲେ। ଗାନ୍ଧିଜୀ ସର୍ବପ୍ରଥମେ ଅହିଂସାକୁ ସ୍ୱାଧୀନତା ସଂଗ୍ରାମର ଏକ ଶକ୍ତିଶାଳୀ ଅସ୍ତ୍ରରୂପେ ବ୍ୟବହାର କଲେ ଏବଂ ଏହା ସଂପୂର୍ଣ୍ଣ ଫଳପ୍ରଦ ହୋଇଥିଲା। ଅତ୍ୟାଚାରୀ ହିଂସାପୂର୍ଣ୍ଣ ଶାସନକୁ ଲୋପ କରିବାପାଇଁ ସେ ଏହାକୁ ବ୍ୟବହାର କରି ନିଜ ଅଭିଜ୍ଞତା ଓ ଅନୁଭୂତିରୁ ହୃଦୟଙ୍ଗମ କଲେ ଯେ ଏହା ଏକ ଶକ୍ତିଶାଳୀ ଅସ୍ତ୍ର। ଲବଣ ସତ୍ୟାଗ୍ରହବେଳେ ବ୍ରିଟିଶ ଶାସନକୁ ଗାନ୍ଧି କହିଦେଇ ପାରିଥିଲେ- "ତୁମ ଅନ୍ୟାୟ ଆଇନକୁ ଅବଜ୍ଞା କରି ମୁଁ ସମୁଦ୍ରକୂଳରୁ ମୁଠାଏ ଲୁଣ ସଂଗ୍ରହ କରିବି। ମତେ ତୁମେ ମାରିଦେଇ ପାର। ତୁମ ସାମ୍ରାଜ୍ୟର ସମସ୍ତ ଶକ୍ତି ମତେ ଡରାଇ ପାରିବ ନାହିଁ। ତୁମେ ମୋ ହାତ ମୁଠାର ସବୁ ହାଡ଼ତକ ଭାଙ୍ଗି ଦେଇପାର, ମାତ୍ର ମୋ ହାତ ମୁଠାରୁ ଲୁଣ ଛଡ଼ାଇ ନେଇ ପାରିବ ନାହିଁ। ଏହିପରି ଗାନ୍ଧିଜୀ ସବଳର ଅହିଂସାକୁ ନିଜ ଜୀବନରେ ପ୍ରୟୋଗ କରି ଶିଖେଇ ଦେଇ ଯାଇଥିଲେ। ବହୁ ସ୍ୱାଧୀନତାସଂଗ୍ରାମୀଙ୍କ ପରି ଗାନ୍ଧିଜୀଙ୍କର ଏହି ସବଳର ଅହିଂସା ମନ୍ତ୍ର ବିନୋଦ ବାବୁଙ୍କୁ ଜୀବନର ସବୁ କ୍ଷେତ୍ରରେ ପ୍ରଭାବିତ କରିଥିଲା।

## ଦାରିଦ୍ର୍ୟ ଭିତରେ ସୌନ୍ଦର୍ଯ୍ୟ

ଗାନ୍ଧିଜୀଙ୍କର ଦ୍ୱିତୀୟ ମନ୍ତ୍ରଟି ହେଲା- 'ଦାରିଦ୍ର୍ୟ ଭିତରେ ସୌନ୍ଦର୍ଯ୍ୟ' ଯାହାକି ତାଙ୍କୁ ପ୍ରଭାବିତ କରିଥିଲା। ମନୁଷ୍ୟ ସମାଜକୁ ଏହା ଥିଲା ତାଙ୍କର ମହାନ ଅବଦାନ। ସ୍ୱାଧୀନତା ସଂଗ୍ରାମବେଳେ ବହୁ ବିଶିଷ୍ଟ ଧନୀ, ଶିଳ୍ପପତି ଓ ବିଦ୍ୱାନ ଲୋକେ ନିଜର ବୃତ୍ତି ଛାଡ଼ି ବାହାରି ଆସି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲେ, କାରାବରଣ କଲେ ତଥା ଦୁଃଖ କଷ୍ଟ ବରଣ କଲେ। ଅନେକ ଉଚ୍ଚ ଚାକିରିର ମୋହ ଛାଡ଼ି, ଧନ ଓ ବିଦ୍ୟାର ମୋହ ଛାଡ଼ି ଚାଲିଆସିଥିଲେ। ବିନୋଦ ବାବୁଙ୍କ ଭଳି ଯେଉଁ ଛାତ୍ରମାନେ ଭବିଷ୍ୟତକୁ ଜଳାଞ୍ଜଳି ଦେଇ ଚାଲି ଆସିଥିଲେ ଗାନ୍ଧିଜୀ ସେମାନଙ୍କୁ କହିଥିଲେ ଯେ "ଦାରିଦ୍ର୍ୟକୁ ବରଣ କରିବାରେ ଗୌରବ ଅଛି। ଦାରିଦ୍ର୍ୟକୁ ବରଣ କରି ସନ୍ତୁଷ୍ଟ ହୁଅ ନାହିଁ। ଦାରିଦ୍ର୍ୟ ଭିତରେ ସୌନ୍ଦର୍ଯ୍ୟ ଦେଖ।" ସ୍ୱେଚ୍ଛାରେ

ଦାରିଦ୍ର୍ୟ ବରଣ କରିଥିବା ଲୋକର ଅନ୍ୟ ପାଖରେ ସମ୍ମାନ ଅଛି। ଯଦି ଜଣେ ଦରିଦ୍ର ଲୋକ ଧନୀ ଲୋକ ଆଗରେ ମୁଣ୍ଡ ନ ନୁଆଁଏ ତା'ହେଲେ ସେହି ଧନୀ ଲୋକ ସ୍ୱୀକାର କରିବ ଯେ ଏହି ଲୋକ ଦରିଦ୍ର ହୋଇ ମଧ୍ୟ ମୋଠାରୁ ଉଚ୍ଚରେ ଅଛି। ଦରିଦ୍ର ଲୋକ ଆଗେଇ ଗଲାବେଳେ ସେହି ଦରିଦ୍ର ଲୋକ ଅନୁଭବ କରିବ ଯେ ସେ ଦରିଦ୍ର ନୁହେଁ। ସେ ଦାରିଦ୍ର୍ୟ ଭିତରେ ସୌନ୍ଦର୍ଯ୍ୟ ଦେଖୁଥିବ।

ବିନୋଦ ବାବୁ ଗାନ୍ଧିଜୀଙ୍କ ଏହି ମନ୍ତ୍ରଦ୍ୱାରା ବିଶେଷ ଉପକୃତ ହୋଇ ନିଜ ଜୀବନକୁ ସାର୍ଥକ କରିଥିଲେ। ସେ ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବରେ ରଚନାତ୍ମକ କର୍ମୀ ବା ସମଗ୍ର ଗ୍ରାମସେବକ ହୋଇ କାର୍ଯ୍ୟ କରୁଥିବାବେଳେ ବହୁ ଅଳ୍ପ ଅର୍ଥରେ ଜୀବନ ନିର୍ବାହ କରୁଥିଲେ। ମାତ୍ର ଏଥିପାଇଁ କୌଣସି ଧନୀ ଲୋକ ପାଖରେ ମୁଣ୍ଡ ନୁଆଁଇ ନ ଥିଲେ। ସେ ଏକ ପ୍ରକାର ଶୂନ୍ୟ ହସ୍ତରେ ଓଡ଼ିଆ ଭାଷାରେ 'ଜ୍ଞାନମଣ୍ଡଳ' ପ୍ରଣୟନ କରିବାପାଇଁ ମନସ୍ଥ କରିଥିଲେ। ଏପରି ବ୍ୟୟବହୁଳ ଶ୍ରମ ସାଧ୍ୟ କାର୍ଯ୍ୟରେ ଆଗେଇ ଚାଲିଥିଲାବେଳେ ତାଙ୍କର ବନ୍ଧୁ ଓ ଆତ୍ମୀୟମାନେ ବିସ୍ମିତ ହୋଇଥିଲେ। ସେ ଏଥିପାଇଁ ଅସମ୍ଭବ ପରିମାଣ ସୁଧହାରରେ କାବୁଲିବାଲାଠାରୁ ଟଙ୍କା କରଜ କରିଥିଲେ ସୁଦ୍ଧା କୌଣସି ଧନୀ ଲୋକ ପାଖରେ ମୁଣ୍ଡ ନୁଆଁଇ ନ ଥିଲେ। ଦାରିଦ୍ର୍ୟ ଭିତରେ ସୌନ୍ଦର୍ଯ୍ୟ ଦେଖିବାର ଅନୁଭୂତି ସେତିକିବେଳେ ତାଙ୍କର ହୋଇଥିଲା। ତାଙ୍କ ସାଙ୍ଗରେ ଯେଉଁମାନେ ପଢ଼ା ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ ସେମାନଙ୍କ ଭିତରୁ ଅନେକ ଅଧାରୁ ଦେଶ କାମ ଛାଡ଼ି ଚାଲିଗଲେ କାରଣ ଦାରିଦ୍ର୍ୟ ବରଣ କରିବାକୁ ସେମାନେ ଚାହିଁ ନ ଥିଲେ। ମାତ୍ର ବିନୋଦ କାନୁନ୍‌ଗୋ ସଂଗ୍ରାମୀ ଥିଲାବେଳେ ଓ ସାହିତ୍ୟ ସାଧନା କରୁଥିଲାବେଳେ ଅନେକ ସମୟରେ ଓଳିଏ ଖାଇ ବା ବେଳେ ବେଳେ ଉପବାସ ରହି କାମ କରୁଥିଲେ। ଏ କଥା ବାହାରେ କେହି ଜାଣିପାରୁ ନ ଥିଲେ।

ଗାନ୍ଧିଜୀଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସି ତାଙ୍କ ଲେଖାଗୁଡ଼ିକୁ ତନ୍ନ ତନ୍ନ କରି ପଢ଼ି ଓ ମନନ କରି ସେ ଅସାଧାରଣ ଶକ୍ତି ସଂଚୟ କରି ପାରିଥିବାରୁ ଓଡ଼ିଆ ସାହିତ୍ୟକୁ ବିରାଟ ଅବଦାନ ଦେଇଯାଇଥିଲେ।

## ତାଙ୍କର ଦୁଇଟି ଗୁରୁ- ଫାଇଲ ଓ ବହି

ବିନୋଦ କାନୁନ୍‌ଗୋ ସବୁ ଛାଡ଼ି ଦେଇ ଦୀର୍ଘ ୩୫ ବର୍ଷ କାଳ ଯେଉଁ ସାହିତ୍ୟ ସାଧନା କରିଥିଲେ ସେତେବେଳେ ତାଙ୍କର କେହି ଗୁରୁ ନ ଥିଲେ। ସେ ନିଜକୁ ନିଜେ ଗୁରୁ କରି ସାଧନା ପଥରେ ଆଗେଇ ଚାଲିଥିଲେ। କୌଣସି ଜଟିଳ ବୈଜ୍ଞାନିକ ତଥ୍ୟ ନ ବୁଝି ପାରିଲେ ବୈଜ୍ଞାନିକମାନଙ୍କ ନିକଟରୁ ବୁଝୁଥିଲେ। ଦିନକୁ ଟ୧୫୦ ପର୍ଯ୍ୟନ୍ତ ଖର୍ଚ୍ଚ କରି ବିଭିନ୍ନ ଦୈନିକ ପତ୍ରିକା, ସାମୟିକ ପତ୍ରିକାମାନ ମଗାଇ ପଢୁଥିଲେ ଓ ସେଥିରୁ ଆବଶ୍ୟକୀୟ ଅଂଶଗୁଡ଼ିକୁ କାଟି ବିଭିନ୍ନ ଫାଇଲ

ଭିତରେ ସଜାଇ ରଖୁଥିଲେ। ଐତିହାସିକ, ରାଜନୈତିକ, ଅର୍ଥନୈତିକ, ସାମାଜିକ, ସାଂସ୍କୃତିକ ଏବଂ ବୈଜ୍ଞାନିକ ବିଷୟକ ତଥ୍ୟଗୁଡ଼ିକ ସେ ବିଭିନ୍ନ ଫାଇଲରେ ସଜାଇ ରଖିଥିଲେ। ଶେଷକୁ ଏହି ଫାଇଲର ସଂଖ୍ୟା ୩୦ ହଜାରରୁ ଅଧିକ ହୋଇଯାଇଥିଲା। ଏହି ସବୁ ଫାଇଲରେ ତଥ୍ୟ ଓ ବିବରଣୀ ଛଡ଼ା ବହୁ ସଂଖ୍ୟକ ଚିତ୍ର ଥିଲା। 'ଜ୍ଞାନମଣ୍ଡଳ' ପାଇଁ ଓ ଶିଶୁ ପୁସ୍ତକମାନ ଲେଖିଲାବେଳେ ତଥା କୌଣସି ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନରେ ବକ୍ତୃତା ଦେବାକୁ ନିମନ୍ତ୍ରିତ ହେଲେ ଏହି ଫାଇଲଗୁଡ଼ିକ ତାଙ୍କୁ ସାହାଯ୍ୟ କରିଥାଏ। ସେଥିପାଇଁ ଏହି ଫାଇଲଗୁଡ଼ିକ ତାଙ୍କର ପ୍ରଥମ ଗୁରୁବୋଲି ସେ କହିଛନ୍ତି। ତାହା ଛଡ଼ା ରେଡ଼ିଓ ଓ ଟେଲିଭିଜନ ଦରକାର ହେଲେ କର୍ତ୍ତୃପକ୍ଷ ଜ୍ଞାନମଣ୍ଡଳ ଅଫିସରୁ ଏହି ଫାଇଲଗୁଡ଼ିକରୁ ତଥ୍ୟ ଓ ଫଟୋର ସାହାଯ୍ୟ ଗ୍ରହଣ କରିଥାନ୍ତି।

ତାଙ୍କର ଦ୍ୱିତୀୟ ଗୁରୁ ଥିଲା ପୁସ୍ତକ। ସେ ବହୁ ସଂଖ୍ୟକ ବିଭିନ୍ନ ପ୍ରକାର ପୁସ୍ତକ ଅଧ୍ୟୟନ ଓ ମନନ କରିଥିଲେ। ବହୁ ପୁରାତନ ଆପ୍ତବାକ୍ୟ "ଉପାଦେୟ ପୁସ୍ତକ ଅଭାବରେ ଭଗବାନ ନୀରବ, ନ୍ୟାୟ ସୁପ୍ତ, ବିଜ୍ଞାନ କାରାରୁଦ୍ଧ, ଦର୍ଶନ ପଙ୍ଗୁ ଓ ବିଦ୍ୟା ମୂକ"; ଏହି ସର୍ବଦା ସତ୍ୟକଥାଟି ଯିଏ କହିଛନ୍ତି ତାଙ୍କୁ ହିଁ ଗୁରୁ କରି ସେ ପୁସ୍ତକ ଅଧ୍ୟୟନ କରୁଥିଲେ। ସେ କେବଳ ଚିତ୍ତ ବିନୋଦନପାଇଁ ବା ବିଳାସପାଇଁ ପୁସ୍ତକ ଅଧ୍ୟୟନ କରନ୍ତି ନାହିଁ। ଯାହା ତାଙ୍କ ସାହିତ୍ୟ ସାଧନାପାଇଁ ଉପଯୋଗ ହୋଇ ପାରିବ ସେହିଭଳି ପୁସ୍ତକ ସବୁ ସେ ପଢୁଥିଲେ। ସେ ବହୁ ବିଶିଷ୍ଟ ସାହିତ୍ୟିକଙ୍କ ପ୍ରଣୀତ ଗଳ୍ପ, ଉପନ୍ୟାସ ଓ କାବ୍ୟ କବିତା ପଢ଼ି ନ ଥିଲେ, ଅଥଚ ଆମେରିକା ଯୁକ୍ତରାଷ୍ଟ୍ର ସରକାରଙ୍କ ଦ୍ୱାରା ପ୍ରକାଶିତ ୩୬୦ ପୃଷ୍ଠା ବ୍ୟାପୀ 'ଜଳ' ସଂବନ୍ଧୀୟ ପ୍ରବନ୍ଧ ଅଧ୍ୟୟନ କରି ନୋଟ କରିଥିଲେ। ସେହିପରି 'Great Books'(ମହାନ ପୁସ୍ତକମାଳା) ୪୪୩ ଖଣ୍ଡି ପୁସ୍ତକ ଗୁଡ଼ିକୁ ସେ ଅଧ୍ୟୟନ କରିଥିଲେ। କେତେକ ପୁସ୍ତକକୁ ସେ ବାରମ୍ବାର ପଢ଼ିଥିଲେ ଏବଂ ଆଉ କେତେକ ପୁସ୍ତକ ଉପରେ ସେ କେବଳ ଆଖି ପକାଇ ଯାଉଥିଲେ।

## ସେ ଥିଲେ ଶିକ୍ଷକଙ୍କ ଗୁରୁ

କେତେକ କହୁଥିଲେ ଯେ ବିନୋଦ କାନୁନ୍‌ଗୋଙ୍କର କୌଣସି ଗୋଟିଏ କ୍ଷେତ୍ରରେ ସଫଳତା ନାହିଁ। ତେଣୁ ମୃତ୍ୟୁପରେ ତାଙ୍କୁ ଆଉ କେହି ମନେ ରଖିବେ ନାହିଁ। ସେମାନଙ୍କୁ ଦୋଷ ନ ଦେଇ ସେ କହୁଥିଲେ- "ମୋ ମୃତ୍ୟୁବେଳେ ଲୋକେ ଯଦି କହିବେ ଯେ ଜଣେ ସଫଳ ଶିକ୍ଷକ ଚାଲିଗଲେ ତାହା ମୋ ପ୍ରତି ଯଥେଷ୍ଟ ସମ୍ମାନ ହେବ। ମତେ ଶିକ୍ଷକ ବୋଲି ନ କହି ଜଣେ ମାଟିବଂଶ ଅବଧାନ ବୋଲି କୁହାଯାଉ। ମାଟିବଂଶ ଅବଧାନର କାମ ହେଲା- ପିଲାଙ୍କୁ ଅକ୍ଷର ଚିହ୍ନାଇବା, ଅକ୍ଷର ଦେଖାଇ ଦେବା, ମାତ୍ରା ଲେଖାଇଦେବା, ବହି ପଢ଼ାଇ ଦେବା ଓ ପଣିକିଆ ଘୋଷାଇ

ଦେବା । ସେଇଠି ତାଙ୍କ କାମ ଶେଷ ହେଲା । ଭବିଷ୍ୟତରେ ସେହି ପିଲାମାନେ କଣ କରିବେ ସେଥିରେ ଅବଧାନଙ୍କର ଆଗ୍ରହ ନ ଥାଏ ।'' ତାଙ୍କ ପ୍ରଣୀତ ଛୋଟ ଛୋଟ ବହିଗୁଡ଼ିକ ଯିଏ ପଢ଼ିବେ ସେ ବିଷୟରେ ଅଧିକ ଜାଣିବାପାଇଁ ଆଗ୍ରହ ପ୍ରକାଶ କରିବେ ଓ ତାପରେ ''ଜ୍ଞାନମଣ୍ଡଳ'' ଅଧ୍ୟୟନ କରିବେ । ସେତେବେଳେ ସେ ଜଣେ ଶିକ୍ଷିତ ବ୍ୟକ୍ତି ଭାବରେ ପରିଚିତ ହେବେ । ତାଙ୍କ ପ୍ରଣୀତ ପୁସ୍ତକଗୁଡ଼ିକ ଛାତ୍ରମାନଙ୍କୁ ପାଠ୍ୟ ପୁସ୍ତକର ବିଷୟଗୁଡ଼ିକ ବୁଝିବାପାଇଁ ଯେପରି ସାହାଯ୍ୟ କରୁଥିଲା, ଶିକ୍ଷକମାନେ ଛାତ୍ରଙ୍କୁ ପଢ଼ାଉଥିବାବେଳେ ସେହିପରି ସାହାଯ୍ୟ କରୁଥିଲା । ଏହିପରି ଭାବରେ ସେ ଶିକ୍ଷକଙ୍କ ଗୁରୁ ଥିଲେ ବୋଲି କୁହାଯାଇପାରେ ।

## ଶିଶୁ ଜ୍ଞାନମଣ୍ଡଳ ପ୍ରଣେତା

୧୯୮୮ ମସିହାରେ ଭାରତ ସରକାର ପ୍ରାଥମିକ ସ୍ତରର ଛାତ୍ରମାନେ ବୁଝି ପାରିବା ଭଳି ବର୍ଣ୍ଣମାଳା ଅନୁସରଣରେ ଏକ ଏନ୍‌ସାଇକ୍ଲୋପିଡିଆ ବା ଜ୍ଞାନକୋଷ ପ୍ରଣୟନ କରିବାପାଇଁ ନିଷ୍ପତ୍ତି କଲେ । ଭାରତ ସରକାର ବିଭିନ୍ନ ଆଞ୍ଚଳିକ ଭାଷାରେ ଏହି ଜ୍ଞାନକୋଷ ପ୍ରକାଶ କରିବାପାଇଁ ବିଭିନ୍ନ ରାଜ୍ୟ ସରକାରମାନଙ୍କୁ ଆର୍ଥିକ ସାହାଯ୍ୟ ଦେଇଥିଲେ । ଓଡ଼ିଶା ସରକାର, ଓଡ଼ିଆ ଭାଷାରେ ଏହିଭଳି ଏକ ଜ୍ଞାନକୋଷ ନିଜ ଉଦ୍ୟମରେ ପ୍ରଣୟନ କରିବା କଥା । ମାତ୍ର ତାହା କରିବା ସମ୍ଭବ ନ ହେବାରୁ ରାଜ୍ୟ ସରକାରଙ୍କ ଶିକ୍ଷା ବିଭାଗ ଏହି ଦାୟିତ୍ୱ ଜ୍ଞାନମଣ୍ଡଳର ପ୍ରଣେତା ବିନୋଦ କାନୁନ୍‌ଗୋଙ୍କୁ ଦେଇଥିଲେ । ଶ୍ରୀ କାନୁନ୍‌ଗୋଙ୍କ ପ୍ରତିଷ୍ଠିତ ଜ୍ଞାନମଣ୍ଡଳ ଫାଉଣ୍ଡେସନ 'ଶିଶୁ ଜ୍ଞାନମଣ୍ଡଳ' ନାମରେ ଏହି ପୁସ୍ତକଟିକୁ ଦୁଇ ଖଣ୍ଡରେ ବିଭକ୍ତ କରି ପ୍ରକାଶ କରି ରାଜ୍ୟ ସରକାରଙ୍କ ଶିକ୍ଷାବିଭାଗକୁ ଯୋଗାଇ ଦେଇଥିଲେ ।

ଶ୍ରୀ କାନୁନ୍‌ଗୋ ବର୍ଣ୍ଣମାଳା ଅନୁସାରେ ଏହି ଶିଶୁ ଜ୍ଞାନମଣ୍ଡଳ ପୁସ୍ତକ ଦୁଇଟି ପ୍ରଣୟନ କରିଛନ୍ତି । ୩୦୨ ପୃଷ୍ଠା ବିଶିଷ୍ଟ ଏହି ପୁସ୍ତକରେ ଜ୍ଞାନବିଜ୍ଞାନର ସମସ୍ତ ଜ୍ଞାତବ୍ୟ ବିଷୟ ସଂକ୍ଷେପରେ ରହିଛି । ପିଲାମାନଙ୍କପାଇଁ ଏହି ବିଷୟଗୁଡ଼ିକୁ ସରସ ଓ ଚିତ୍ତାକର୍ଷକ କରିବାପାଇଁ ଏଥିରେ ବହୁ ଚିତ୍ର ଦିଆ ଯାଇଛି ଓ ବିଷୟଗୁଡ଼ିକୁ ସରଳ ଭାଷାରେ ଲେଖାଯାଇଛି । ଏହି ବିଷୟଗୁଡ଼ିକ ସଂକ୍ଷେପରେ ଲେଖାଯାଇଥିବାରୁ ପ୍ରାଥମିକ ସ୍ତରର ପିଲାମାନେ ବୁଝିପାରିବେ । ନ ବୁଝି ପାରିଲେ ଶିକ୍ଷକମାନେ ପିଲାମାନଙ୍କୁ ବୁଝାଇ ଦେବେ । ବିନୋଦ ବାବୁ 'ଶିଶୁ ଜ୍ଞାନମଣ୍ଡଳ' ପୁସ୍ତକର ମୁଖବନ୍ଧ ଲେଖାରେ ଆଶା କରିଛନ୍ତି ଯେ ଦିନେ ଶିଶୁ ଜ୍ଞାନମଣ୍ଡଳ ଓଡ଼ିଶାର ସମସ୍ତ ପ୍ରାଥମିକ, ମାଧ୍ୟମିକ ଓ ହାଇସ୍କୁଲର ଛାତ୍ରମାନେ ଆଗ୍ରହରେ ଅଧ୍ୟୟନ କରି ଜ୍ଞାନବିଜ୍ଞାନର ସମସ୍ତ ବିଷୟରେ ମୌଳିକ ଜ୍ଞାନ ଆହରଣ କରିପାରିବେ ।

## ୩୨ ବର୍ଷ ସାଧନାପରେ ଜାତୀୟ ସ୍ତରରେ ସ୍ୱୀକୃତି

ବିନୋଦ କାନୁନ୍‌ଗୋ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନିରବଚ୍ଛିନ୍ନ ଭାବରେ ୩୦ ବର୍ଷ ସାଧନା କରି ୪୨ ଖଣ୍ଡ 'ଜ୍ଞାନମଣ୍ଡଳ' ଓ ୪୨ ଖଣ୍ଡ ଜ୍ଞାନବିଜ୍ଞାନ ସଂବନ୍ଧୀୟ ସୁଖପାଠ୍ୟ କ୍ଷୁଦ୍ର ପୁସ୍ତକ ପ୍ରଣୟନ କରିସାରିବାପରେ ଜାତୀୟ ସ୍ତରରେ ତାଙ୍କୁ ସ୍ୱୀକୃତି ମିଳିଥିଲା। ୧୯୮୬ ମସିହା ସାଧାରଣତନ୍ତ୍ର ଦିବସରେ ଭାରତ ସରକାର ତାଙ୍କୁ "ପଦ୍ମଶ୍ରୀ" ଉପାଧିରେ ଭୂଷିତ କରିଥିଲେ। ଅବଶ୍ୟ ତା ପୂର୍ବରୁ ଓଡ଼ିଶା ସାହିତ୍ୟ ଏକାଡ଼େମି ତାଙ୍କ ଆତ୍ମଜୀବନୀ ପୁସ୍ତକ 'ଋଣ ପରିଶୋଧ' ଓ ଶିଶୁ ସାହିତ୍ୟ "ଛାତିକୁ ପଥର କରି" ପୁସ୍ତକପାଇଁ ତାଙ୍କୁ ପୁରସ୍କୃତ କରିଥିଲେ। କେତେକ ବେସରକାରୀ ଅନୁଷ୍ଠାନ ମଧ୍ୟ ତାଙ୍କୁ ସମ୍ମାନିତ କରିଥିଲେ। ମୃତ୍ୟୁର ମାତ୍ର ତିନି ବର୍ଷ ପୂର୍ବରୁ ସେ ଜାତୀୟ ସ୍ତରରେ ସମ୍ମାନିତ ହେଲେ। ତାଙ୍କ ସାହିତ୍ୟ ସାଧନା ସହିତ ସୁପରିଚିତ ଓଡ଼ିଶା ଓ ଭାରତର ବିଶିଷ୍ଟ ବ୍ୟକ୍ତିମାନେ ମତ ପ୍ରକାଶ କରିଥିଲେ ଯେ ବିନୋଦ ବାବୁ ବହୁ ଆଗରୁ ଜାତୀୟ ସ୍ତରରେ ସମ୍ମାନିତ ହେବା ଉଚିତ ଥିଲା। ତାଙ୍କ ଶେଷ ସାଧନାର ପୀଠ ଜ୍ଞାନମଣ୍ଡଳ ଅଫିସରେ ଯେଉଁ ୩୦ ହଜାର ମୂଲ୍ୟବାନ ଫାଇଲ ସେ ସଜ୍ଜିତ କରି ରଖିଛନ୍ତି ଓ ଦରକାର ହେଲା ମାତ୍ରେ ସେଥିରୁ ଯେ କୌଣସି ବିଷୟ ଅଣାଯାଇ ପାରୁଛି ତାହା ଦେଖି ଦେଶ ଓ ବିଦେଶର ବହୁ ହେବା ସଙ୍ଗେ ସଙ୍ଗେ ବିଶିଷ୍ଟ ବିଦ୍ୱାନ ଓ ବୈଜ୍ଞାନିକ ବିସ୍ମିତ ତାଙ୍କ ସାଧନାର ଉଚ୍ଚ ପ୍ରଶଂସା କରିଛନ୍ତି। 'ଜ୍ଞାନମଣ୍ଡଳର ୪୨ ଖଣ୍ଡ ଯାକର ପ୍ରତ୍ୟେକ ପୃଷ୍ଠା ସେ ଲେଖି ଯେଉଁମାନଙ୍କଠାରୁ ସେ କେତେକ ବିଷୟ ଲେଖାଇ ଆଣିଥିଲେ ସେ ଗୁଡ଼ିକୁ ସେ ନିଜ ଭାଷା ଓ ଢ଼ଙ୍ଗରେ ଲେଖିଥିଲେ। ଜ୍ଞାନମଣ୍ଡଳର ମୂଳରୁ ଶେଷଯାଏ ପଢ଼ିଲେ ଯେ କୌଣସି ପାଠକ ଜାଣିପାରିବେ ଯେ ଜଣେ ବ୍ୟକ୍ତି ଏହାର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ଲେଖିଛନ୍ତି।

## ତାଙ୍କର ଶେଷ ପରିକଳ୍ପନା-ଜାତୀୟ ଜ୍ଞାନମଣ୍ଡଳ ସଂସ୍ଥା

'ଜ୍ଞାନମଣ୍ଡଳ' ପ୍ରଣୟନ ତଥା ଶିଶୁ ପଠନ ଉପଯୋଗୀ ପୁସ୍ତକମାଳା ପ୍ରଣୟନ ପାଇଁ ସେ ଯେଉଁ ସବୁ ମୂଲ୍ୟବାନ୍ ଫାଇଲ, ଚିତ୍ର ଓ ପୁସ୍ତକ ସଂଗ୍ରହ କରିଥିଲେ ସେଗୁଡ଼ିକ ଅନ୍ୟଭାଷାରେ ସଂକଳନ କରାଯାଉଥିବା ବିଶ୍ୱକୋଷପାଇଁ ବହୁ କ୍ଷେତ୍ରରେ ଉପଯୋଗ କରାଯାଇ ପାରିବ ବୋଲି ବିନୋଦ ବାବୁ ଅନୁଭବ କରିଥିଲେ। ତେଣୁ ରାଜ୍ୟ ସରକାର ଏଥିପାଇଁ ଭୁବନେଶ୍ୱରଠାରେ ଆବଶ୍ୟକୀୟ ଜମି ଓ ଗୃହ ନିର୍ମାଣ ପାଇଁ କିଛି ଅର୍ଥ ମଂଜୁର କରିଥିଲେ। ଏହି ଜାତୀୟ ସଂସ୍ଥାର ଭିତ୍ତି ପ୍ରସ୍ତର ସ୍ଥାପନ ଅବସରରେ ସେ ଭୁବନେଶ୍ୱରଠାରେ ବିଭିନ୍ନ ଆଞ୍ଚଳିକ ଭାଷାରେ ପ୍ରଣୟନ କରାଯାଇଥିବା ଏନ୍‌ସାଇକ୍ଲୋପିଡ଼ିଆ ବା ବିଶ୍ୱକୋଷ ସଂକଳନ କରୁଥିବା ଅନୁଷ୍ଠାନର ପ୍ରତିନିଧିମାନଙ୍କର

ଏକ ଆଲୋଚନାଚକ୍ରର ଆୟୋଜନ କରିଥିଲେ। ସେହି ଆଲୋଚନାଚକ୍ରରେ ଯୋଗ ଦେଇଥିବା ବିଦ୍ୱାନ ପ୍ରତିନିଧିମାନେ ଜ୍ଞାନମଣ୍ଡଳ ଅଫିସରେ ଫାଇଲ ସବୁ ଦେଖି ଭୂୟସୀ ପ୍ରଶଂସା କରିଥିଲେ। ଜଣେ ବ୍ୟକ୍ତିଙ୍କ ସାଧନା ଫଳରେ ଗୋଟିଏ ଭାଷାରେ ଏନ୍‌ସାଇକ୍ଲୋପିଡିଆ ପ୍ରଣୟନ କରାଯାଇଥିବାରୁ ସେମାନେ ବିନୋଦ କାନୁନ୍‌ଗୋଙ୍କ ପ୍ରତି ବିଶେଷ ସମ୍ମାନ ପ୍ରଦର୍ଶନ କରିଥିଲେ।

## ଲୋକ ଶିକ୍ଷାପାଇଁ ତାଙ୍କର ଶେଷ ଯୋଜନା

ମହାତ୍ମା ଗାନ୍ଧିଙ୍କ ଲୋକଶିକ୍ଷା କାର୍ଯ୍ୟକ୍ରମରେ ଅନୁପ୍ରାଣିତ ହୋଇ ବିନୋଦ ବାବୁ ତାଙ୍କ ସାହିତ୍ୟ ସାଧନା ଆରମ୍ଭ କରିଥିଲେ। ସେ ଜ୍ଞାନମଣ୍ଡଳ ତଥା ଛାତ୍ର, ଶିକ୍ଷକ ଓ ସାଧାରଣ ସାକ୍ଷର ପାଠକଙ୍କପାଇଁ ୪୨ ଖଣ୍ଡ ପୁସ୍ତକ ଲେଖିସାରିବା ପରେ ଏହି ବହିଗୁଡ଼ିକ ବିଭିନ୍ନ ଗାଁ ଗହଳରେ ପ୍ରତି ଲୋକ ପାଖରେ କିପରି ପହଞ୍ଚିବ ସେହିପାଇଁ ଗୋଟିଏ ପରିକଳ୍ପନା ପ୍ରସ୍ତୁତ କରିଥିଲେ। ଏହି ପରିକଳ୍ପନା ଅନୁଯାୟୀ ଗୋଟିଏ ଗାଁର ୨୫ ଜଣ ଲୋକ ଯଦି ପ୍ରତ୍ୟେକ ମାତ୍ର ୧୦ଟି ପଇସା ଦେବେ ତେବେ ସେମାନେ ତାଙ୍କ ପ୍ରଣୀତ ଛୋଟ ବହିରୁ ଖଣ୍ଡେ କିଣି ନେଇ ପାରିବେ ଏବଂ ସେମାନେ ଜଣ ଜଣ କରି ଏହାକୁ ପଢ଼ିଦେଇ ପାରିବେ। ଏହି ପରିକଳ୍ପନାକୁ ସେ ଜାତୀୟ ସ୍ତରରେ ନାସନାଲ ବୁକ୍ ଟ୍ରଷ୍ଟ ପକ୍ଷରୁ ଆୟୋଜିତ ଏକ ଆଲୋଚନାଚକ୍ରରେ ଉପସ୍ଥାପିତ କରିଥିଲେ। ଏହି ଆଲୋଚନାଚକ୍ରରେ ଭାରତର ସମସ୍ତ ଆଞ୍ଚଳିକ ଭାଷାରେ ଲୋକଶିକ୍ଷା କ୍ଷେତ୍ରରେ କାର୍ଯ୍ୟ କରୁଥିବା ବିଦ୍ୱାନ ପ୍ରତିନିଧିମାନେ ଯୋଗଦେଇଥିଲେ। ସେମାନେ ତାଙ୍କର ଏହି ପରିକଳ୍ପନାକୁ ଏକ ଅଭିନବ ଲୋକ ଶିକ୍ଷା ଯୋଜନା ବୋଲି ଅଭିହିତ କରିଥିଲେ। ସେଠାରେ ସେ ତାଙ୍କ ଶିଶୁ ସାହିତ୍ୟ ଯୋଜନାର ଉଦ୍ଦେଶ୍ୟ ବୁଝାଇ କହିଥିଲେ ଯେ ଜ୍ଞାନର ପ୍ରତ୍ୟେକ ବିଭାଗର ମୌଳିକ ତଥ୍ୟ ପିଲାମାନଙ୍କୁ ଶିକ୍ଷା ଦେବା ଆମର ଉଦ୍ଦେଶ୍ୟ। ଜଣେ ଯଦି ଜ୍ଞାନର ସବୁ ବିଭାଗର ମୌଳିକ ତଥ୍ୟ ସହିତ ପରିଚିତ ନ ହେବ ତା'ହେଲେ ତାଙ୍କୁ ପ୍ରକୃତ ଅର୍ଥରେ ଶିକ୍ଷିତ ବୋଲି କୁହାଯାଇପାରିବ ନାହିଁ। ଏହି ଦଶ ପଇସିଆ ଶିକ୍ଷା ବିପ୍ଳବକୁ ସେ ତାଙ୍କ ଗାଁରେ ଆରମ୍ଭ କରି ଉତ୍ସାହିତ ହୋଇଥିଲେ। ଅନେକ ସ୍ଥାନରେ ଏହି ପରିକଳ୍ପନାକୁ ଲୋକେ ଆନନ୍ଦରେ ଗ୍ରହଣ କରିଥିଲେ।

## ତାଙ୍କ ତୀକ୍ଷ୍ଣ ବୁଦ୍ଧି ଓ ହାସ୍ୟରସିକତା

ବିନୋଦ କାନୁନ୍‌ଗୋ ପିଲାଦିନୁ ଧୂର୍ତ୍ତ ଓ ପ୍ରତ୍ୟୁତ୍ପନ୍ନମତି ଥିଲେ। ପରବର୍ତ୍ତୀ ଜୀବନରେ ଜଣେ ହାସ୍ୟରସିକ ଭାବରେ ପରିଚିତ ହୋଇଥିଲେ। ପିଲାଦିନେ ମାମୁଁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଘରେ ରହି ପ୍ରାଥମିକ ସ୍କୁଲରେ ପଢୁଥିଲେ। ସେହି

ସମୟରେ ତାଙ୍କ ମାମୁଁ ଛୁଟିବେଳେ ଘରକୁ ଆସନ୍ତି। ଥରେ ସେ ଘରେ ଥିଲାବେଳେ ଦେଖିଲେ ଯେ ବିନୋଦ ଡେ଼ରିରେ ଘରକୁ ଫେରୁଛି। ଆର୍ତ୍ତ ବାବୁ ତାଙ୍କୁ ପଚାରିଲେ- ଏତେବେଳେ ଯାଏ କୁଆଡେ଼ ବୁଲୁଥିଲୁ। ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ ସ୍କୁଲକୁ ଯାଇଥିଲି। ସେ ଦିନ ଥିଲା ରବିବାର, ସ୍କୁଲ ନାହିଁ। ମାତ୍ର ଆର୍ତ୍ତ ବାବୁଙ୍କର ମନେ ନ ଥିଲା। ବିନୋଦ ବାବୁ କହିଲାପରେ ସେଠି ଜଣେ ଥିଲେ। କହି ଦେଲେ - ଆଜି ପରା ରବିବାର। ସେ କଥା ପଚାରିବାକୁ ଖୋଜିଲାବେଳକୁ ବିନୋଦ କୁଆଡେ଼ ଚାଲିଗଲେଣି। ଆଉ ଦିନେ ମାମୁଁ ଆର୍ତ୍ତ ବାବୁ ଗୋଟିଏ ଆମ୍ବ ଗଛରୁ ଆମ୍ବ ତୋଳି ଆଣି ବିନୋଦଙ୍କୁ ଚାଖିବାକୁ ଦେଲେ। ସେ ଚାଖି କରି କହିଲେ - ମିଠା ଲାଗୁଛି। ତାପରେ ତାଙ୍କ ପୁଅ ଚାଖି କରି କହିଲେ ଆମ୍ବଟା ଖଟା ଲାଗୁଛି। ସେ କଥା ବିନୋଦ ବାବୁଙ୍କୁ ପଚାରିବେ ବୋଲି ଖୋଜିଲାବେଳକୁ ସେ ନାହାନ୍ତି।

ବିନୋଦ ବାବୁଙ୍କ କଥା ସବୁବେଳେ ସରସ ଓ ଉପଭୋଗ୍ୟ। ତାଙ୍କ ସାଙ୍ଗେ କଥାବାର୍ତ୍ତା ହୋଇସାରି କେହି ମନ ଦୁଃଖରେ ଫେରିବ ନାହିଁ। ସେ ଓଡ଼ିଶାର ଯେଉଁ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ କାମ କରୁଥିଲେ ସେମାନଙ୍କୁ ମଧ୍ୟ ଥଟ୍ଟା ପରିହାସ କରୁଥିଲେ ଓ ସେମାନେ ତାକୁ ଉପଭୋଗ କରୁଥିଲେ। ପୂଜ୍ୟ ଆଚାର୍ଯ୍ୟ ହରିହର ଦାସଙ୍କ ୫୦ବର୍ଷ ପୂର୍ତ୍ତି ଉପଲକ୍ଷେ ଏକ ଉତ୍ସବରେ ତାଙ୍କୁ ପଚାଶ ହଜାର ଟଙ୍କାର ଏକ ଥଳି ଓ ଗୋଟିଏ ଅଭିନନ୍ଦନ ଗ୍ରନ୍ଥ ଉପହାର ଦିଆ ଯାଉଥାଏ। ଟଙ୍କାଥଳି ଆଚାର୍ଯ୍ୟ ମହାଶୟ ଗ୍ରହଣ କଲେ ଏବଂ କହିଲେ ଏହା ହରିଜନଙ୍କ ସେବାରେ ବିନିଯୋଗ ହେବ। ମାତ୍ର ଅଭିନନ୍ଦନ ଗ୍ରନ୍ଥଟିକୁ ସେ ଗ୍ରହଣ କଲେ ନାହିଁ। କହିଲେ ଯେ ଏ ମୋର କଣ ହବ? ଏଥିରେ ବିଶିଷ୍ଟ ବ୍ୟକ୍ତିମାନେ ତାଙ୍କ ଗୁଣ କୀର୍ତ୍ତନ କରି ପ୍ରବନ୍ଧମାନ ଲେଖିଥିଲେ। ସେଠାରେ ଉପସ୍ଥିତ ଥିବା ବ୍ୟକ୍ତିମାନଙ୍କ ନିବେଦନକୁ ସେ ଗ୍ରହଣ କଲେ ନାହିଁ। ବିନୋଦ ବାବୁ ସେଠି ଉପସ୍ଥିତ ଥିଲେ। ସେ କହିଲେ ଆଚାର୍ଯ୍ୟ ମହାଶୟ କାହିଁକି ଏ ଅଭିନନ୍ଦନ ଗ୍ରନ୍ଥ ନେଉ ନାହାନ୍ତି କି, ସେ ଭାବିଛନ୍ତି ଯେ ଏଥିରେ କେତେକ ବ୍ୟକ୍ତି ତାଙ୍କୁ ସମାଲୋଚନା କରି ବା ନିନ୍ଦା କରି ଲେଖିଥିବେ। ସେହି ଲେଖାଗୁଡ଼ିକ ପଢ଼ିବାପାଇଁ ତାଙ୍କୁ ଅଡୁଆ ଲାଗିବ। ସେଇଥିପାଇଁ ସେ ନଉ ନାହାନ୍ତି। ଏହା କହିବାମାତ୍ରେ ଆଚାର୍ଯ୍ୟ ମହାଶୟ ଉଠି ଆସି କହିଲେ ମୁଁ ତୋତେ ପାରିବି ନାହିଁ। ହଉ ଦେ ମୁଁ ନେବି। ସମସ୍ତେ ଆଶ୍ୱସ୍ତ ହେଲେ।

ବିନୋଦ ବାବୁ ବରୀ ଅଞ୍ଚଳରେ ଜଣେ ରଚନାତ୍ମକ କର୍ମୀ ଭାବରେ କାର୍ଯ୍ୟ କରୁଥିବାବେଳେ ଥରେ ପୂଜ୍ୟା ରମା ଦେବୀଙ୍କ ସଙ୍ଗେ ବରୀ ଅଞ୍ଚଳର ଗୋଟିଏ ଗାଁରେ କେତେକ ରୋଗୀଙ୍କୁ ଦେଖିବାକୁ ଯାଇଥିଲେ। ତାଙ୍କ ସାଙ୍ଗରେ ବିନୋଦ ବାବୁ ଯାଇଥିଲେ। ଜଣେ ରୋଗୀଙ୍କୁ ଦେଖିସାରିଲାପରେ ସେଠି ଉପସ୍ଥିତ ଥିବା ଜଣେ ଗ୍ରାମବାସୀ କହିଲେ- ମା ରୋଗୀଙ୍କୁ ଭଲ ଆସ୍ୱାଦନ କରନ୍ତି। 'ଆଶ୍ୱାସନା'କୁ



ଜ୍ଞାନମଣ୍ଡଳ କାର୍ଯ୍ୟାଳୟରେ ଆଚାର୍ଯ୍ୟ ହରିହର

ସେ 'ଆସ୍ୱାଦନ' ବୋଲି କହୁଥିଲେ। ଏହା ଶୁଣି ବିନୋଦ ବାବୁ କହିଲେ- ଯାହା କହୁଛନ୍ତି ଠିକ୍। ଏହିପରି ଆମ ପାଳି କେଉଁ ଦିନ ପଡ଼ିବ ଆମେ ତା'କୁ ଅପେକ୍ଷା କରି ରହିଛୁ। ଶ୍ରୀମତୀ ରମା ଦେବୀ ତାଙ୍କକଥା ଶୁଣି ଠୋ ଠୋ ହୋଇ ହସିଲେ।

ଏହିପରି ଅଗଣିତ ଦୃଷ୍ଟାନ୍ତ ଦିଆଯାଇ ପାରିବ।

## ତାଙ୍କ ଜୀବନୀ ସଂବନ୍ଧରେ ପ୍ରମାଣିକ ଚଳଚ୍ଚିତ୍ର

ସମଗ୍ର ଦେଶରେ କୌଣସି ଆଞ୍ଚଳିକ ଭାଷାରେ ଜଣେ ବ୍ୟକ୍ତି ଗୋଟିଏ ଏନ୍‌ସାଇକ୍ଲୋପିଡିଆ ପ୍ରଣୟନ କରିବା କ୍ଷେତ୍ରରେ ଶ୍ରୀ ବିନୋଦ କାନୁନ୍‌ଗୋଙ୍କ ସାଧନା ଜାତୀୟ ସ୍ତରରେ ସର୍ବୋତୋଭାବରେ ସ୍ୱୀକୃତ ହୋଇଥିଲା। ଅନ୍ୟ ଆଞ୍ଚଳିକ ଭାଷାରେ ବହୁ ବିଶିଷ୍ଟ ବିଦ୍ୱାନ, ବୁଦ୍ଧିଜୀବୀ ଓ ଶିକ୍ଷାବିତ୍‌ମାନଙ୍କ ଉଦ୍ୟମରେ ଯାହା କରାଯାଉଛି ଶ୍ରୀ କାନୁନ୍‌ଗୋ ଏକୁଟିଆ ତାହା ସଫଳତାର ସହିତ କରି ଭାରତର ସାହିତ୍ୟିକ ଓ ବିଦ୍ୱାନମାନଙ୍କୁ ବିସ୍ମୟାଭିଭୂତ କରିଥିଲେ। ତାଙ୍କ ସାଧନାର ସ୍ୱୀକୃତି ସ୍ୱରୂପ ଭାରତ ସରକାର ତାଙ୍କୁ "ପଦ୍ମଶ୍ରୀ" ଉପାଧିରେ ଭୂଷିତ କରିଥିଲେ ଓ ଦୂରଦର୍ଶନ ପକ୍ଷରୁ ତାଙ୍କ ଜୀବନୀ ଓ କାର୍ଯ୍ୟକଳାପ ଉପରେ ଏକ ପ୍ରାମାଣିକ ଚଳଚ୍ଚିତ୍ର ଗ୍ରହଣ କରାଯାଇଥିଲା। ଏହି ଚଳଚ୍ଚିତ୍ରଟିକୁ ଭାରତର ବିଭିନ୍ନ ଭାଷାରେ ଭାଷାନ୍ତର କରାଯାଇ ପ୍ରଦର୍ଶନ କରାଯାଇଛି। ଏହା ଛଡ଼ା ଭାରତର ବହୁ ବିଶିଷ୍ଟ ରାଜନୀତିଜ୍ଞ, ବୁଦ୍ଧିଜୀବୀ, ଶିକ୍ଷାବିଦ୍ ଓ ବୈଜ୍ଞାନିକ 'ଜ୍ଞାନମଣ୍ଡଳ' ଅନୁଷ୍ଠାନ ପରିଦର୍ଶନ କରି ସେଠାରେ ସେ ସାଇତି ରଖିଥିବା ତଥ୍ୟଗୁଡ଼ିକ ଜ୍ଞାନକୋଷପାଇଁ ବିଶେଷ ସହାୟକ ହେବ ବୋଲି ଆଶା ପ୍ରକାଶ କରିଛନ୍ତି।

## ତାଙ୍କ ପ୍ରଣୀତ ଆତ୍ମଜୀବନୀମୂଳକ ଦୁଇ ଖଣ୍ଡି ପୁସ୍ତକ

ବିନୋଦ କାନୁନ୍‌ଗୋ ତାଙ୍କ ସାହିତ୍ୟିକ ସାଧନାକାଳ ଭିତରେ ଜ୍ଞାନମଣ୍ଡଳର ୪୨ ଖଣ୍ଡ ତଥା ପିଲାଙ୍କ ଉପଯୋଗୀ ୪୨ ଖଣ୍ଡ ଶିଶୁ ସୁଖପାଠ୍ୟ ପୁସ୍ତକ ଛଡ଼ା "ଋଣ ପରିଶୋଧ" ଓ "ପାଠ ପଢେ ପଢେ ଅପାଠୁଆ" ନାମରେ ଦୁଇ ଖଣ୍ଡ ତାଙ୍କର ଆତ୍ମଜୀବନୀ ମୂଳକ ଉପାଦେୟ ପୁସ୍ତକ ପ୍ରଣୟନ କରିଛନ୍ତି। ତାଙ୍କର ଅନ୍ୟାନ୍ୟ ଲେଖାପରି ଏହି ଉଲ୍ଲେଖନୀୟ ପୁସ୍ତକ ଦୁଇଟିର ଭାଷା ଯେପରି ସରସ ଓ ସରଳ ବିଷୟଗୁଡ଼ିକ ସେହିପରି ଅତ୍ୟନ୍ତ ଶିକ୍ଷଣୀୟ। "ଋଣ ପରିଶୋଧ" ପୁସ୍ତକରେ ସେ ତାଙ୍କ ସାହିତ୍ୟ ସାଧନାବେଳେ ତଥା ରଚନାତ୍ମକ କର୍ମୀଭାବରେ କାର୍ଯ୍ୟ କରୁଥିବାବେଳେ ଯେଉଁମାନେ ତାଙ୍କୁ ନୈତିକ ଓ ବୌଦ୍ଧିକ ସାହାଯ୍ୟ ଦେଇଥିଲେ ସେମାନଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିଛନ୍ତି ଓ ସେମାନଙ୍କଠାରେ ଋଣୀ ବୋଲି ସେ କହିଛନ୍ତି। ପ୍ରଥମତଃ ତାଙ୍କ ମାମୁଁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ବିଷୟରେ ସେ ପୁସ୍ତକର ବହୁ ସ୍ଥାନରେ ଉଲ୍ଲେଖ କରିଛନ୍ତି। ପ୍ରାଚୀ ସମିତି ପ୍ରତିଷ୍ଠା କରି ସେ ଓଡ଼ିଶାର

ପ୍ରାଚୀନ ସାହିତ୍ୟର ତୁଳନାତ୍ମକ ଆଲୋଚନା କ୍ଷେତ୍ରରେ ତାଙ୍କର ଅତୁଳନୀୟ ଅବଦାନ କଥା ଉଲ୍ଲେଖ କରିଛନ୍ତି। ସେଥିରୁ ସେ ତାଙ୍କ ସାହିତ୍ୟ ସାଧନାପାଇଁ ଶିକ୍ଷା ଲାଭ କରିଥିଲେ। ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ସାଙ୍ଗରେ ତାଙ୍କ ଘରେ ତଥା ରେଭେନ୍ସା କଲେଜ ହଷ୍ଟେଲରେ ରହିଥିବାରୁ ତାଙ୍କ ପରିଚୟର ଦିଗ୍‌ବଳୟ କିପରି ବିସ୍ତାରିତ ହୋଇଥିଲା ତାହା ସେ ବର୍ଣ୍ଣନା କରିଛନ୍ତି। ତାଙ୍କ ଛଡ଼ା ଓଡ଼ିଶାର ସ୍ୱନାମଧନ୍ୟ ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଜାଙ୍କ ବ୍ୟକ୍ତିତ୍ୱ ଓ ସାଧନାର ଭୂୟସୀ ପ୍ରଶଂସା କରି କହିଛନ୍ତି ତାଙ୍କଠାରୁ ସେ ଯେଉଁ ସବୁ ବୈଜ୍ଞାନିକ ପତ୍ରିକା ପାଇଥିଲେ ତାହା ଜ୍ଞାନମଣ୍ଡଳ ପ୍ରଣୟନରେ ବିଶେଷ ସାହାଯ୍ୟ କରିଥିଲା। ସେ ଓଡ଼ିଶାର ବିଶିଷ୍ଟ ଦାର୍ଶନିକ ବିପିନ ବିହାରୀ ରାୟ, ରସାୟନ ବିଜ୍ଞାନବିତ୍ ଅଧ୍ୟାପକ ଗୁରୁଚରଣ ମହାନ୍ତି, ଐତିହାସିକ ଅଧ୍ୟାପକ ଘନଶ୍ୟାମ ଦାସଙ୍କ ଘନିଷ୍ଠ ସମ୍ପର୍କରେ ଆସିଥିବା କଥା ମଧ୍ୟ ଉଲ୍ଲେଖ କରିଛନ୍ତି। କଲିଜିଏଟ୍ ସ୍କୁଲର ହେଡମାଷ୍ଟର ସଚ୍ଚିଦାନନ୍ଦ ରାୟ ଓ ଅନ୍ୟ କେତେକ ବିଶିଷ୍ଟ ଶିକ୍ଷକଙ୍କ ବିଷୟରେ ମଧ୍ୟ ସେ ଉଲ୍ଲେଖ କରିଛନ୍ତି।

ରାଜନୀତି କ୍ଷେତ୍ରରେ ସ୍ୱାଧୀନତା ସଂଗ୍ରାମୀ ଚନ୍ଦ୍ରଶେଖର ମିଶ୍ରଙ୍କୁ ସେ ତାଙ୍କର ପ୍ରଥମ ରାଜନୈତିକ ଗୁରୁବୋଲି ଉଲ୍ଲେଖ କରିଛନ୍ତି। ପରବର୍ତ୍ତୀ ସମୟରେ ରଚନାତ୍ମକ କର୍ମୀଭାବରେ ସେ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ, ପୂଜ୍ୟା ରମା ଦେବୀ ଏବଂ ନବକୃଷ୍ଣ ଚୌଧୁରୀଙ୍କଠାରୁ ଯେଉଁ ଶିକ୍ଷା ଓ ତାଲିମ ପାଇଥିଲେ ତାହା ବିଭିନ୍ନ ସ୍ଥାନରେ ବର୍ଣ୍ଣନା କରିଛନ୍ତି। ସାମ୍ବାଦିକତା କ୍ଷେତ୍ରରେ ଡଃ ରାଧାନାଥ ରଥଙ୍କଠାରୁ ସେ ଯେଉଁ ତାଲିମ ପାଇଥିଲେ ତାହା ତାଙ୍କ ଭବିଷ୍ୟତ ଜୀବନର ପାଥେୟ ହୋଇଥିଲା ବୋଲି ତାଙ୍କର ମତ।

ପାଠ ପଢେ ପଢେ ଅପାଠୁଆ ପୁସ୍ତକରେ ସେ ନବମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ ମଧ୍ୟ ନିଜକୁ ନିଜେ ଗୁରୁକରି ବ୍ୟାପକ ଓ ସମନ୍ୱିତ ଶିକ୍ଷା ଲାଭ କରିବା ନିମନ୍ତେ ସେ ଜୀବନବ୍ୟାପି ଯେଉଁ ସାଧନା କରିଥିଲେ ତାର ସୁନ୍ଦର ଚିତ୍ର ମିଳିଥାଏ। ତାଙ୍କର ଏହି ଦୁଇ ଖଣ୍ଡି ଲୋକପ୍ରିୟ ପୁସ୍ତକର ତଥ୍ୟକୁ ଆଧାର କରି ଶିକ୍ଷକଙ୍କ ଗୁରୁ ବିନୋଦ କାନୁନ୍‌ଗୋ ପୁସ୍ତକ ପ୍ରଣୀତ ହୋଇଛି।

## ତାଙ୍କର ଶେଷ ଜୀବନ

ବିନୋଦ କାନୁନ୍‌ଗୋ ୧୯୩୦ ମସିହାରେ ମହାତ୍ମା ଗାନ୍ଧିଙ୍କ ଆହ୍ୱାନରେ ପଢ଼ା ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା ପରେ ଦୀର୍ଘ ୫୮ ବର୍ଷ କାଳ କର୍ମ ବହୁଳ ଜୀବନ ଅତିବାହିତ କରିଥିଲେ। ସେଥିଭିତରୁ କାରାଜୀବନ କାଳକୁ ଛାଡ଼ି ୧୯୫୪ ପର୍ଯ୍ୟନ୍ତ ଜଣେ ରଚନାତ୍ମକ କର୍ମୀ, ହରିଜନ ସେବକ ଓ ସମଗ୍ର ଗ୍ରାମସେବକ ଭାବରେ କାର୍ଯ୍ୟ କରିବା ପରେ ଦୀର୍ଘ ୩୫ କାଳ ସେ ସାହିତ୍ୟ ସାଧନାରେ ମନୋନିବେଶ କରିଥିଲେ। ୩୨ ବର୍ଷ ସାହିତ୍ୟ ସାଧନାପରେ ଜାତୀୟ

ସ୍ତରରେ ସ୍ୱୀକୃତି ଲାଭ କଲାବେଳକୁ ସେ ଜଣେ କ୍ଲାନ୍ତ ଓ ମଧୁମେହ ରୋଗଗ୍ରସ୍ତ ବ୍ୟକ୍ତି। କିନ୍ତୁ ତାଙ୍କର ମାନସିକ ଶକ୍ତି ପୂର୍ବପରି ଅତୁଟ ରହିଥିଲା ଓ ସେ ସେତେବେଳେ ମଧ୍ୟ ୧୦ ଘଣ୍ଟାରୁ ଅଧିକ ପରିଶ୍ରମ କରିପାରୁଥିଲେ। ଶେଷ ଜୀବନ ପର୍ଯ୍ୟନ୍ତ ସେ ସାହିତ୍ୟ ସାଧନାରୁ କ୍ଷାନ୍ତ ହୋଇ ନ ଥିଲେ। କଟକ ଜ୍ଞାନମଣ୍ଡଳ ଅଫିସରେ ବହୁ ଲୋକ ତାଙ୍କ ପାଖକୁ ଆସି କାମରେ ବାଧା ଦେବାରୁ ସେ ମଝିରେ ମଝିରେ ଗାଁକୁ ଚାଲିଯାଇ ସେଠାରେ ଲେଖା ପଢ଼ା କରନ୍ତି। ଗାଁରେ ମଧ୍ୟ ସେ ସୁନ୍ଦର ବଗିଚାଟିଏ କରି ଉନ୍ନତ ଧରଣର ଫଳ ଗଛ ଲଗାଇ ଥିଲେ। ଗାଁକୁ ଗଲାବେଳେ ସେ ଚିକିତ୍ସାର ନିୟମ ଅନେକ ସମୟରେ ପାଳନ କରନ୍ତି ନାହିଁ। ଶରୀର ଅପେକ୍ଷା କାମ ଥିଲା ତାଙ୍କ ପାଇଁ ବଡ଼।

ସେ ଯେମିତି ମୃତ୍ୟୁର ତିନି ବର୍ଷ ଆଗରୁ ନିମନ୍ତ୍ରଣ ପାଇଥିଲେ। ସେ ୭୮ ବର୍ଷ ବୟସରେ ୧୯୮୯ ମସିହା ଜୁନ ମାସ ୨୨ ତାରିଖରେ ଓଡ଼ିଶା ବାସୀଙ୍କୁ ଛାଡ଼ି ଚାଲି ଯାଇଥିଲେ। ତାର ତିନି ବର୍ଷ ଆଗରୁ ୧୯୮୬ ମସିହାରେ ସେ ତାଙ୍କର ଶେଷ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥିଲେ। ୧୯୮୬ ମସିହାରେ ତାଙ୍କ ଆତ୍ମଜୀବନୀ ମୂଳକ ପୁସ୍ତକ "ପାଠ ପଢେ ପଢେ ଅପାଠୁଆ" ପୁସ୍ତକର ଶେଷ ପୃଷ୍ଠାରେ ସେ ଲେଖିଛନ୍ତି- "ଏଇତକ ଲେଖିଲା ବେଳକୁ ଜୀବନର ୭୫ବର୍ଷ ପାର ହୋଇଗଲାଣି। ଏପରି ଗୋଟିଏ ସମୟ ଆସି ପହଞ୍ଚିଲାଣି ଯେ ଆଉ ପାଞ୍ଚ ଦଶ ବର୍ଷପାଇଁ ଯୋଜନା କରିବା ଆଦୌ ଠିକ ହେବ ନାହିଁ। ତେଣୁ ତିନି ବର୍ଷିଆ ଯୋଜନାଟି କରୁଛି।" ଏହା ଲେଖିବାର ଠିକ୍ ତିନି ବର୍ଷ ପରେ ତାଙ୍କର ମୃତ୍ୟୁ ଘଟିଲା। ଏହି ମୃତ୍ୟୁଞ୍ଜୟୀ ପୁରୁଷ ଦୀର୍ଘକାଳ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସାଧନା କରି ଓଡ଼ିଆ ଭାଷାରେ ଜ୍ଞାନ ବିଜ୍ଞାନର ଯେ କୌଣସି ଜଟିଳ ବିଷୟକୁ ପ୍ରକାଶ କରିବାର ଶକ୍ତି ପ୍ରଦାନ କରି ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଇତିହାସରେ ଅମର ହୋଇ ରହିଛନ୍ତି।

